# ଅପ୍ରେସନ
# ଓକାଅଶୀଂ କେଜୀ

ଗୋପାଳ ଚନ୍ଦ୍ର ପଟ୍ଟନାୟକ

ହାସ୍ୟରସରେ ମୁଖର

ନାଟକ

# ଅପ୍ରେସନ୍ ଏକାଅଶୀ କେଜି

ଗୋପାଳ ଚନ୍ଦ୍ର ପଟ୍ଟନାୟକ

# ଅପ୍ରେସନ୍ ଏକାଅଶୀ କେଜି

ରଚନା

ଗୋପାଳ ଚନ୍ଦ୍ର ପଟ୍ଟନାୟକ

ସି/୨୨, ବକ୍ସି ଜଗବନ୍ଧୁ ନଗର

ଭୁବନେଶ୍ୱର - ୧୪

ଦୂରଭାଷ - ୨୪୩୧୮୧୮

ପ୍ରକାଶନା

ବର୍ମା ପ୍ରିଣ୍ଟର୍ସ ଆଣ୍ଡ ପବ୍ଲିଶର୍ସ

୨୧୩୨/୪୮୬୯, ନାଗେଶ୍ୱର ଟାଙ୍ଗୀ

ଭୁବନେଶ୍ୱର - ୨

ଦୂରଭାଷ - ୨୪୩୩୮୮୮

ମୁଦ୍ରଣ

ତୁଳୁଲି ପ୍ରୋସେସ୍ ଆଣ୍ଡ ଅଫ୍‌ସେଟ୍

ବାପୁଜୀ ନଗର, ଭୁବନେଶ୍ୱର

ପ୍ରଥମ ପ୍ରକାଶ - ୨୦୦୩

ମୂଲ୍ୟ - ଟ. ୨୪/-

# ପ୍ରାରମ୍ଭ ସୂଚନା

ଏ ନାଟକଟି ନିୟମିତ ନାଟକ ପ୍ରଦର୍ଶନରେ ପ୍ରତିଷ୍ଠା ଲାଭ କରିଥିବା ଉତ୍କଳ ରଙ୍ଗମଞ୍ଚ ଟ୍ରଷ୍ଟ ଦ୍ୱାରା ଭଞ୍ଜ କଳାମଣ୍ଡପରେ ୨୦୦୪ ମସିହା ଜୁଲାଇ ୩୦ରୁ ସେପ୍ଟେମ୍ବର ୧୯ ପର୍ଯ୍ୟନ୍ତ (ପ୍ରତି ସପ୍ତାହରେ ତିନିଦିନ) କ୍ରମାଗତ ଉପସ୍ଥାପିତ ହୋଇ ବହୁ ଦର୍ଶକ ପ୍ରୀତି ଓ ପ୍ରଶଂସା ଲାଭ କରିଥିଲା । ନାଟକକୁ ମିଳିଥିବା ପ୍ରୀତି ଓ ପ୍ରଶଂସାର ବହୁଭାଗ ଏ ନାଟକର ସମସ୍ତ ସାର୍ଥକ ଅଭିନୟ କୁଶଳ ଶିଳ୍ପୀ, ସୁଦକ୍ଷ ଓ ଅଭିଜ୍ଞ ନିର୍ଦ୍ଦେଶକ ଓ ଅଭିନେତା ଶ୍ରୀ ରବି ତ୍ରିପାଠୀ ଏବଂ ସ୍ୱନାମଧନ୍ୟ ନାଟ୍ୟବ୍ୟକ୍ତିତ୍ୱ, ଅଭିନେତା, ନିର୍ଦ୍ଦେଶକ ତଥା ସୁଦକ୍ଷ ପ୍ରଯୋଜକ ଶ୍ରୀ ଅନନ୍ତ ମହାପାତ୍ରଙ୍କରହିଁ କୃତିତ୍ୱର ଫଳ, ତେଣୁ ସେମାନଙ୍କରହିଁ ପ୍ରାପ୍ୟ । ସେଥିପାଇଁ ଏଇ ଅବସରରେ ମୁଁ ସେମାନଙ୍କୁ ମୋର ସଶ୍ରଦ୍ଧ କୃତଜ୍ଞତା ଜଣାଉଛି ।

ନାଟକଟିର ଅବଧି ଅନ୍ତତଃ ଦୁଇଘଣ୍ଟା । କେବଳ ମଂଚାୟନ ନୁହେଁ, ପଢାଗଲେ ମଧ ଅନୁରୂପ ଆମୋଦ ଦେଇ ପାରିବାର ଲକ୍ଷ୍ୟ ନେଇ ଏ ନାଟକ ଲେଖାଯାଇଛି ଓ ଆବଶ୍ୟକ ପରିମାର୍ଜନ ଓ ପରିବର୍ଦ୍ଧନ କରାଯାଇଛି । ମୁଁ ମୋର ହାସ୍ୟନାଟକରେ ଆରମ୍ଭରୁ ଶେଷଯାକେ ଉଚ୍ଚଳ ହାସ୍ୟ ଆମୋଦ ଦେବାର ଏବଂ ହାସ୍ୟ-ବର୍ଜିତ କିଛି ସଂଳାପ ବା ଘଟନାକୁ ଦୂରେଇ ରଖିବାର ଚେଷ୍ଟା କରିଥାଏ । ଏ ନାଟକଟି ମଧ ସେଇ ନିୟମରେ ଲେଖାଯାଇଛି । ତେଣୁ ମୋର ବିଶ୍ୱାସ, ଏ ନାଟକଟିକୁ ମଂଚାୟିତ କଲେ ବା ପଢିଲେ, ମଧ, ବିଶେଷ କରି ମନେ ମନେ ଅଭିନୟ କରି ପଢିଲେ ମଧ ଅନୁରୂପ ଆନନ୍ଦ ମିଳିପାରିବ ।

ଆମ ଜୀବନ କ୍ରମେ କ୍ରମେ ଅଧିକରୁ ଅଧିକ ଜଟିଳ, କୁଟୀଳ ଓ ଗମ୍ଭୀର ହୋଇଯାଉଛି । ସଂଘର୍ଷ ଆଉ ଦ୍ୱନ୍ଦରେ ଭରିଯାଉଛି । ଅଥଚ ଏ ସବୁ ଭିତରେ ଯୋଉ ହସ ଆମକୁ କିଛି ଖୁସି କିଛି ଶାନ୍ତି ଦେଇ ପାରନ୍ତା, ଆମ ଜୀବନର ବୋଝ କିଛି ହାଲୁକା କରିପାରନ୍ତା, ସେ ହସ ଆମ ଜୀବନରୁ ଅଧିକରୁ ଅଧିକ ହଜି ହଜି ଯାଉଛି ।

ତେଣୁ ଆପଣଙ୍କୁ ନିମନ୍ତ୍ରଣ, ଯେଉଁଠି ଯେତେବେଳେ ଯେତିକି ହସିବାର ସୁଯୋଗ ପାଉଛନ୍ତି ତାକୁ ଛାଡ଼ନ୍ତୁ ନାହିଁ । ହସନ୍ତୁ । ମନ ଖୋଲି ହସନ୍ତୁ । ଅନ୍ୟମାନେ କଣ ଭାବିବେ ବୋଲି ଭାବନ୍ତୁ ନାହିଁ । ସେମାନେ ବି କିଛି ସମୟ ପରେ ଆପଣଙ୍କ ସାଙ୍ଗରେ ମିଶି ହସିବେ - ହୁଏତ ଆପଣଙ୍କଠୁଁ ବି ଆହୁରି ଜୋର୍‌ରେ ।

ବିନୀତ

ଲେଖକ

# ଲେଖକୀୟ ପରିଚିତି

ହାସ୍ୟ ଓ ସିରିୟସ ନାଟକ ଏବଂ ଗଳ୍ପ ଓ ଉପନ୍ୟାସ ରଚନାରେ ବ୍ୟାପୃତି । ନାଟକ ରଚନା ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର (୧୯୯୦) । ପ୍ରଥମ ନିଖିଳ ଭାରତ ବେତାର ନାଟକ ରଚନା ପ୍ରତିଯୋଗିତାରେ ଓଡ଼ିଆ ଭାଷାରେ ପ୍ରଥମ ପୁରସ୍କାର (୧୯୮୭) । ୧୯୮୯, ୧୯୯୨, ୧୯୯୫ ପ୍ରତିଯୋଗିତାର ଏକକ (ଶ୍ରେଷ୍ଠ) ପୁରସ୍କାର ବିଚାରାଧୀନ । କଟକ ଆକାଶବାଣୀ / ମନନ ନାଟ୍ୟସଂସ୍ଥା / ଗଣକବି ବୈଷ୍ଣବ ପାଣି ସମ୍ମାନ ୨୦୦୨/୨୦୦୩/୨୦୦୪ ।

## ନାଟକ ସଂକଳନ

### ହାସ୍ୟ

ମୁଁ ହିରୋ ହେବି
ଦିନେ ଖରାବେଳେ
ବିବି ଓ ବଡ଼ବାବୁ ଓ
ଅନ୍ୟାନ୍ୟ ହାସ୍ୟନାଟିକା
ନୀତା ନୟନା ସଂବାଦ

### ସିରିୟସ

ସମୁଦ୍ର ମନ୍ଥନ
ସ୍ୱପ୍ନପୁରୁଷ

### ଗଳ୍ପ ସଂକଳନ

ଦିହୁଡ଼ି
କୁହୁଡ଼ି
ପଞ୍ଜୁରି ପକ୍ଷୀ
ସଫା ହାତର ବାସ୍ନା
ସବୁ ରାସ୍ତା ଏକା ଏକା

## ମଞ୍ଚ /ବେତାର / ଦୂରଦର୍ଶନ ପାଇଁ ଲିଖିତ ନାଟକ / ନାଟିକା

### ସିରିୟସ

ବକ୍ଷମର୍ମର
ଆହୁତି
ବିନ୍ଦୁ ଓ ସିନ୍ଧୁ
ସମୁଦ୍ର ମନ୍ଥନ
ଶୁଦ୍ଧ ସୁବର୍ଣ୍ଣ ବରନା
ସୁନା ସଂସାର
ଅନାଗତ ସୁକନ୍ୟାର କାହାଣୀ
ପାଦତଳ ବାଲୁବନ୍ତ
ଜତୁଗୃହର ଅଗ୍ନି
ସ୍ୱପ୍ନପୁରୁଷ
ସବୁ ରାସ୍ତା ଏକା ଏକା
ଅନ୍ୟ ଏକ ଶୋଭାଯାତ୍ରା

### ହାସ୍ୟ

ଦିନେ ଖରାବେଳେ
କରୁଣାମୟ
ଇକାର ଭେଦ ଶବଦ
ମୁଁ ହିରୋ ହେବି
ମୁଁ ବାଆଜୀ ହେବି
ସୁରମାଙ୍କ ଚାବିକାଠି ଓ ତାଙ୍କ ହେତୁ
ମାତ୍ର ମାଧ ଓ ମାଛ ମଞ୍ଜି
ଲାଇବେରୀ ଚାନ୍ଦା
ବିବି ଓ ବଡ଼ବାବୁ
ସମ୍ପାଦକଙ୍କ ଦପ୍ତରରୁ
କାଛ ଓ କଣ୍ଢାର ପ୍ରସଙ୍ଗ
ନୀତା ନୟନା ସମ୍ବାଦ
ଗୁଣିଆ ଝାଡ଼େଣୀ ମନ୍ତ୍ର
କମ୍ପାନୀ ଦାୟୀ ନୁହେଁ
ସୁନା ନବ ଗୋ ସୁନା
ଅପ୍ରେସନ ଏକାଅଣୀ କେଜି
ସଭା
ଓଡ଼ିଶା ଅୟେଲ କମ୍ପାନୀ
କାନ୍ତା ବିନା ଦିବା ରଜନୀ (ଛଅ ଅଧ୍ୟାୟ)
ଦେବ ସୁରମା ସମ୍ବାଦ (ଛଅ ଅଧ୍ୟାୟ)
ସଂସାର ନାବ (ଆଠ ଅଧ୍ୟାୟ)
କିଛି ହସ କିଛି ନାଟକ, (ତେରଅଧ୍ୟାୟ)
ଏକ ଭୁଲ ଛକର ନାଟକ
ଲୋକଂ ଯଃ କହନ୍ତିଂ
ଘରଭଡ଼ା

ଉତ୍କଳ ରଂଗମଂଚ ଟ୍ରଷ୍ଟର

ଉତ୍କଳ ରଂଗମଂଚ

(ଭଂଜ କଳାମଣ୍ଡପ) ରେ

ଆଠ ସପ୍ତାହ ଧରି ସାଫଲ୍ୟ ଓ ବହୁଜନପ୍ରୀତି ସହ

ପରିବେଷିତ ନାଟକ

# ଅପ୍ରେସନ ଏକାଅଶୀ କେଜି

# - ଚରିତ୍ର ଲିପି -

| | |
|---|---|
| ବକ୍ରେଶ୍ୱର | ସୁନ୍ଦର ସୁଶିକ୍ଷିତ ସରଳ ଯୁବକ । ବ୍ୟବସାୟ କରେ । ଟିକେ ଦୁର୍ବଳ ସ୍ୱାସ୍ଥ୍ୟ । |
| କୀଚକ (ସ୍ୱରୂପ) | ଅବସରପ୍ରାପ୍ତ ସେନାବାହିନୀ ଅଫିସର୍ । ଗମ୍ଭୀର ସ୍ୱଭାବ । କିନ୍ତୁ ସ୍ନେହୀ ଓ ମଙ୍ଗଳାକାଂକ୍ଷୀ । |
| ସୋମୁ | ସୁଶିକ୍ଷିତ ହାସିଖୁସି ଯୁବକ । ବକ୍ରେଶ୍ୱରର ବନ୍ଧୁ । |
| ପୁରନ୍ଦର | ବକ୍ରେଶ୍ୱରର ଚାକର । ତାର ହିତାକାଂକ୍ଷୀ । ଚତୁର ସ୍ୱଭାବ । ବୟସ ୩୦-୩୧ । |
| ଗଣେଶ୍ୱର | ମଧ୍ୟ ବୟସ୍କ । ଧୂର୍ତ୍ତ । ଗ୍ରାମୀଣ । ସହରକୁ ଯିବା ଆସିବା ଅଛି । ବାହାଘର ବ୍ୟବସ୍ଥା କରିବା ପେଶା । |
| ନିତ୍ୟାନନ୍ଦ | ପ୍ରାୟ ମଧ୍ୟବୟସ୍କ । ଭୋଳା ଲୋକ । ଖୁସିବାସୀ ଭାବ । ସ୍ୱଚ୍ଛଳ ସୁଶିକ୍ଷିତ ଓ ସୁନ୍ଦର । |
| ଇନ୍ସପେକ୍ଟର(ଚନ୍ଦ୍ରମୋହନ): | ଅବସରପ୍ରାପ୍ତ ସିକ୍ୟୁରିଟି ଅଫିସର । ସ୍ୱରୂପ ମହାପାତ୍ରଙ୍କ ବନ୍ଧୁ । |
| ଲିଲି ଅପା | ବକ୍ରେଶ୍ୱରର ବଡବାପାଙ୍କ ଝିଅ । ବୟସ ୩୫ - ୩୬ । |
| ସୁଶୀ (ଢୀତା) | ସୁନ୍ଦରୀ ସୁଶିକ୍ଷିତା ଚତୁରୀ ହାସିଖୁସି ଯୁବତୀ । |

--- ୦ ---

ଓଡ଼ିଶାରେ ନିୟମିତ ନାଟକ - ପ୍ରଦର୍ଶନ ମଂଚର ପୁନରୁଦ୍ଧାର ପ୍ରଚେଷ୍ଟାରେ ନିଷ୍ଠାପରଭାବେ ବ୍ୟାପୃତ ଓ ଗତ ପାଂଚବର୍ଷ ମଧ୍ୟରେ ନିୟମିତ ନାଟକ ପ୍ରଦର୍ଶନ ଧାରାକୁ ସଂଜୀବିତ କରି ରଖିବାରେ ସଫଳକାମ ହୋଇଥିବା ଉତ୍କଳ ରଂଗମଂଚ ଟ୍ରଷ୍ଟ, ଭୁବନେଶ୍ୱରର ଉତ୍କଳ ରଂଗମଂଚରେ (ଭଂଜ କଳା ମଣ୍ଡପ), ବହୁ ସାଫଲ୍ୟ, ଜନପ୍ରୀତି ଓ ପ୍ରଶଂସାର ସହ ଆଠ ସପ୍ତାହ (ଚବିଶ ରାତି) ଧରି ପରିବେଷିତ ନାଟକରେ :

| | |
|---|---|
| ବକ୍ରେଶ୍ୱର | ଜ୍ୟୋତି ପଣ୍ଡା |
| କୀଚକେଶ୍ୱର (ସ୍ୱରୂପ) | ରବି ତ୍ରିପାଠୀ |
| ପୁରନ୍ଦର | ଗୌର ବିଶ୍ୱାଳ |
| ସୋମୁ | ଶରତ ସମ୍ରାଟ |
| ନିତ୍ୟାନନ୍ଦ | ପ୍ରଦୀପ ସ୍ୱାଇଁ |
| ଗଣେଶ୍ୱର | ବିଜୟ ଭୂୟାଁ |
| ଉତ୍ସପେକ୍ଟର | ଗୌତମ ପାତ୍ରୀ |
| | |
| ଲିଲି | ମମତା ମହାନ୍ତି |
| ସୁଶୀଳା (ଜୀତା) | ଶୁଭଶ୍ରୀ ମିଶ୍ର (ଟ୍ୱିଙ୍କଲ) |
| | |
| ସଂଗୀତ ପରିଚାଳନା | ମନୋଜ ରଥ |
| ସହଯୋଗୀ | ଶିବ ତ୍ରିପାଠୀ |
| ଆଲୋକ | ପ୍ରଦୀପ ତ୍ରିପାଠୀ |
| ଶବ୍ଦ | ତ୍ରିଲୋଚନ ସାହୁ |
| ମଂଚ ପରିଚାଳନା | ସୁରେଶ ସାହୁ |
| ମିଡ଼ିଆ ଓ ଲୋକ ସଂପର୍କ | ଗୋପାଳ ମିଶ୍ର |

ନିର୍ଦ୍ଦେଶନା
ରବି ତ୍ରିପାଠୀ
ପ୍ରଯୋଜନା
ଅନନ୍ତ ମହାପାତ୍ର

(ବଙ୍କେଶ୍ୱରର ଡ୍ରଇଂ ରୁମ୍ । ଆରାମ କରିବା ପାଇଁ ନାନା ପ୍ରକାରର ଆସବାବପତ୍ର ପଡିଛି । କାନ୍ଥରେ ବହି ଓ କ୍ୟାସେଟ୍‌ର ଆଲମାରୀ । ପାଖରେ ଟିଭି ଓ ମ୍ୟୁଜିକ୍ ସିଷ୍ଟମ । ଗୋଟିଏ ସୁନ୍ଦର ଡିଜାଇନ୍‌ର କୁସନ ସୋଫାସେଟ୍ ଓ ସେଣ୍ଟର ଟେବୁଲ୍ । ତଳେ ଗାଲିଚା ପଡିଛି । ସାମ୍‌ନା ସାମ୍‌ନି ସୋଫାରେ ବଙ୍କେଶ୍ୱର ଓ ତାର ସଂପର୍କରେ ବଡ ଭଉଣୀ ଲିଲି । ସମୟ ଅପରାହ୍ନ ।)

ବଙ୍କେ - (ହାତ ହଲେଇ) ନେହିଁ ।

ଲିଲି - କାହିଁକି ନେହିଁ ?

ବଙ୍କେ - ନେହିଁ ତ ନେହିଁ । କାହିଁକିଟେ ପୁଣି କଣ ?

ଲିଲି - ବଙ୍କୁ ! ମୋ କଥା ମାନ । ଆଉ ମନା କର ନା । ଚାଲ ।

ବଙ୍କେ - ନେହିଁ ।

ଲିଲି - ଖାଲି ତ ନେହିଁ ନେହିଁ ହେଲା ! ତତେ ପରା କହି ସାରିଚି ଖୁଡୀ ଖବର ପଠେଇଛନ୍ତି ତୁ ମୋ ସାଙ୍ଗରେ ଯାଇ ଝିଅ ଦେଖି ଆସିବୁ । ତୋର ଯଦି ପସନ୍ଦ ହୁଏ ତା ହେଲେ ଦାଦାଙ୍କ ପାଖକୁ ବନାରସକୁ ଖବର ଯିବ । ତାପରେ ଦାଦାଖୁଡୀ ଆସି ତୋ ବାହାଘର କଥା ବନ୍ଦୋବସ୍ତ କରିବେ । ସେମାନେ ତୋର ବାହାଘରଟା ସାରିଦବାକୁ ବ୍ୟସ୍ତ । ମୋତେ କହିଛନ୍ତି ତତେ ବୁଝାବୁଝି କରି ନେଇ ଝିଅ ଦେଖେଇ ଆଣିବାକୁ । ମୁଁ ଯାହା ଶୁଣିଚି ଭାରି ଭଲ ଝିଅ । ଘର ବି ଭାରି ଭଲ । ତୋର ଖାଲି ଚାଲିଚି ନେହିଁ ନେହିଁ । ବଙ୍କୁ । ମୋ ସୁନା ଭାଇଟା ପରା ! ଚାଲ୍- ବାହାର । ଆମର ଝିଅଘରେ ପହଞ୍ଚିବା କଥା ସାଢେ ଚାରିଟାରେ । ଏଇନା ବାଜିଲାଣି ପାଞ୍ଚଟା କୋଡିଏ । ସେମାନେ କେତେ ବ୍ୟସ୍ତ ହେଉଥିବେ କହିଲୁ ? (ଡ଼ାକିଲେ) ପୁରନ୍ଦର -

ପୁର - (ଆସିଛି) - ଅପା

ଲିଲି - - କଣ କରୁଥିଲୁ ଭିତରେ ।

ପୁର - ସାର୍ ପରା କୁଆଡ଼େ କନିଆ ଦେଖି ଯିବେ । ତାଙ୍କରି ପାଇଁ ତାଙ୍କ ସାର୍ଟ ପାର୍ଟ ଇସ୍ତ୍ରି ପିସ୍ତ୍ରି କରି ରେଡ଼ି କରୁଥିଲି ।

ଲିଲି - ହେଇ ପୁରନ୍ଦର ସବୁ ରେଡ଼ି କରିଦେଲାଣି । ତୁ ପିନ୍ଧାପିନ୍ଧି କରି ବାହାରିପଡ଼ ।

ବଙ୍କେ - ପୁରନ୍ଦର ! ଅପା ସେତେବେଳୁ ଆସିଲାଣି ପରା । ତା ପାଇଁ ଟିକେ ସର୍ବତ ଫର୍ବତ ଆଣ୍ ।

ପୁର - ହଉ ଆଣୁଛି । (ଚାଲିଗଲା)

ଲିଲି - ହଉ ତୁ ଏଥର ବାହାରିପଡ଼ ।

ବଙ୍କେ - ନେହିଁ ।

ଲିଲି - ଆଉ କଣ ଯାହା ପିନ୍ଧିଛୁ ସେୟାକୁ ପିନ୍ଧି ଚାଲି ଯିବୁ ? ସେଗୁଡା ପରା ଲୋଚାକୋଚା ହେଇଗଲାଣି । ସେଗୁଡାକୁ ପିନ୍ଧି କିଏ ଝିଅ ଦେଖିବାକୁ

ଯାଏ ? ଯା ଭିତରକୁ ଯା- ପୁରନ୍ଦର ଜାମାପଟା ଇସ୍ତ୍ରୀ ଫିସ୍ତ୍ରୀ କରି ରଖିଛି । ପିନ୍ଧାପିନ୍ଧି କରି ଚାଲିଆ । ବାହାରିବା ।

ବକ୍ରେ - ନେହିଁ ।

ଲିଲି - ମାନେ ତୁ ଜମା ଝିଅ ଦେଖି ଯିବୁ ନାହିଁ ? ହେଇଟି ବକ୍ରୁ ! ଏ ବର୍ଷର ବାହାତିଥିସବୁ ସରି ଆସିଲାଣି । ଦେଖା ଦେଖି କରି ଯଦି ଝିଅ ପସନ୍ଦ ନ କରିବୁ ତାହେଲେ ସେମିତି ଓଥରା ହେଇ ବସିଥିବୁ ।

ବକ୍ରେ - ଲିଲି ଅପା ! ଏ ଭିତରେ କେତେ ମୂର୍ତ୍ତୀ ଝିଅ ଦେଖା ହେଇଗଲାଣି ଜାଣିଚୁ ? ଚଉଦ ମୂର୍ତ୍ତୀ । ଆଜିକା ମୂର୍ତ୍ତୀଙ୍କି ମିଶେଇଲେ ହବ ପନ୍ଦର ।

ଲିଲି - ପନ୍ଦର କଣ ପଇଁତିରିଶ ବି ହେଇପାରେ । ବାହାଘର ଫାହାଘର କଥାରେ ସେୟା ହୁଏ । ହବ । ତୁ ଯିବୁ ନାହିଁ କାହିଁକି ?

ବକ୍ରେ - ମୁଁ ପନ୍ଦର ଦେଖିବି ନାହିଁ କି ପଇଁତିରିଶି ବି ଦେଖିବି ନାହିଁ । ଦେଖାଦେଖି ପାଲା ଏଇଠୁ ବନ୍ଦ ।

ଲିଲି - ତା ମାନେ ତୁ ଆଉ ଏଥର ଜମା ଝିଅ ଦେଖିବୁ ନାହିଁ ?

ବକ୍ରେ - ନେହିଁ ।

ଲିଲି - ତା ହେଲେ ଦାଦାଖୁଡୀ ଯାହାକୁ ବାଛିବେ ତାକୁଇ ବାହା ହବୁ ?

ବକ୍ରେ - ନେହିଁ ।

ଲିଲି - ଆଉ କଣ ତୁ ନିଜେ କାହାକୁ ବାଛିଚୁ ?

ବକ୍ରେ - ନେହିଁ ।

ଲିଲି - ସବୁ ତ ନେହିଁ । ତା ହେଲେ ଆଉ କଣ ତୁ ଜମା ବାହା ହବୁ ନାହିଁ ?

ବକ୍ରେ - ନେହିଁ । ଏଥର ମୁଁ ବାଆଜୀ ହେବି ।

ଲିଲି - (ଆଶ୍ଚର୍ଯ୍ୟ ଓ ଆମୋଦିତ) କଣ ହବୁ ?

ବକ୍ରେ - ବାଆଜୀ ବାଆଜୀ । ଏତେ ବଡ ଗୋଟେ ଦାଡୀ ରଖିବି । ଗୋଟେ ଆଶ୍ରମ ଫାଶ୍ରମ କରି ସେଠି ଧୁନି ଜଳେଇ ବସି ଗଞ୍ଜେଇ ଟାଣିବି । ନ ହେଲେ ଭଣ୍ଡବାବାଙ୍କ ପରି ସିଲ୍କ୍ ଧୋତି ପଞ୍ଜାବୀ ପିନ୍ଧି ସୁନାହାର ପକେଇ ଭଣ୍ଡ ପ୍ରବଚନ ଦେବି । ଅଂ ବଂ ଗୁଡେ ଲଗେଇ ମିଛ ମନ୍ତ୍ରସବୁ ତିଆରି କରି ବୋଲିବି । ତମେ ମୂର୍ଖ ପନ୍ଥା ମୋତେ ମହାଗୁରୁ ଭାବି ଯାଇ ମୋ ପାଖରେ ଅଧିଆ ପଡି ମୋତେ ଯଦି ବର ନ ମାଗିଚ-

ଲିଲି - (ନିଃଶବ୍ଦରେ ହସି) ହଉ ହଉ ତୁ ବାଆଜୀ ହେଲେ ହୋ ପଛେ ଏ ଝିଅକୁ ଯାଇ ଟିକେ ଦେଖିଆ ।

ବକ୍ରେ - ମୁଁ ବାଆଜୀ ହେଲେ ତ କେତେ ନାଇଁ କେତେ ଝିଅ ମୋତେ ଦେଖିବାକୁ ଧାଡି ବାନ୍ଧିବେ । ମୁଁ କାହିଁକି କୋଉ ଝିଅକୁ ଦେଖିବାକୁ ଯିବି ହୋ ? ଜମା ବାହା ନହେଇ ବି ତ ମୋ ନାଁ ହବ ସ୍ୱାମୀ ବକ୍ରାନନ୍ଦଜୀ ମହାରାଜ । ଯାନେ

ଦୋ !

ଲିଲି - ହଉ ଯାହା ଯେତେବେଳେ ହବୁ ହୋ ପଛେ ଆଜି ତାଲ ଦେଖି ଦେଇ ଆସିବା ।

ବକ୍ରେ - ଜମା ନୁହେଁ । (ମୁହୂର୍ତ୍ତେ ରହି) କାହା ନାଁ ଅନିନ୍ଦ୍ୟ କାହା ନାଁ ଦିଗନ୍ତ କାହା ନାଁ ସଂଜୟ । ହେଲେ ବାବୁଙ୍କ ନାଁ ହଉଚି ବକ୍ରେଶ୍ୱର । ହୁଁଃ ! ବକ୍ରେଶ୍ୱର ! ଯୋଉଠିକି ଝିଅ ଦେଖି ଗଲା ବେଳକୁ ଦଳେ ଝିଅ ମହୁ ଫେଣାପରି ସେ ଝିଅକୁ ଘେରି ବସିଥିବେ । ଦେଖ କହିବେ ଦେଇଙ୍କି (ଅଭିନୟ କରି) ସୁପ୍ରିୟା ମହୁଆ ଲୋଲା ! ବାବୁଙ୍କ ନାଁଟା କଣ ଶୁଣିଲଟି ? ବକ୍ରେଶ୍ୱର । ବକ୍ରେଶ୍ୱର କିଏ ଜାଣିଚ ତ ? ଅଷ୍ଟବକ୍ରଙ୍କ ସାନଭାଇ । ବକ୍ରାଦି ପୁରାଣରେ ଅଛି । ପଢ଼ି ନା ? ପଢ଼ । ଜାଣିବ । ସେଇଠୁ ହବ ଯେ ହସ ହବ ଯେ ହସ -

ଲିଲି - (ହସ ସମ୍ଭାଳି ନ ପାରି ଚାପି ଚାପି ହସିଲା) ହିଃ... ହିଃ... ହିଃ...

ବକ୍ରେ - ଆଉ ଗୋଟେ ଯାଗାକୁ ଯାଇଥିଲି ଯେ ସେଠି ସେ ମହୁଫେଣା ଭିତରୁ ଗୋଟେ ଝିଅ ଯେମିତି ମୋତେ ଭୁଲ୍‌ରେ ଈଶ୍ୱରବାବୁ ବୋଲି ଡାକିଦେଇଚି ଆଉ ଗୋଟେ ଝିଅ କହୁଚି ଜିଲୁଲୋ ତାଙ୍କ ନାଁ କଣ ଈଶ୍ୱର ? ତାଙ୍କ ନାଁ ପରା ବକ୍ରେଶ୍ୱର । ମାନେ ବକ୍ର ଅଟନ୍ତି ଯେଉଁ ଈଶ୍ୱର ସେ ହେଲେ ବକ୍ରେଶ୍ୱର । ସେଇଠୁ ସେ ଜିଲି ଟୋକୀଟା କହୁଚି କାହିଁ ଏ ଈଶ୍ୱର ତ ଜମା ବକ୍ର ନୁହଁନ୍ତି । ଯାଙ୍କ ନାଁ କାହିଁକି ବକ୍ରେଶ୍ୱର ହେଲା ? ଆଉ ଗୋଟେ ବଦମାସ୍ ଝିଅ ତାକୁ ବୁଝଉଚି ତୁ ଜାଣିନାହୁଁ କି ଲୋ ? ଯେ ପରା ହେଲେ ଭଣ୍ଡ ବକ୍ରେଶ୍ୱର- ଯେମିତି ଭଣ୍ଡ ଗଣେଶ ଭଣ୍ଡ ଗୋପାଳ ଭଣ୍ଡ ମହେଶ । ଯେ ବକ୍ର ହେବେ କାହିଁକି ? (ରାଗି ଦାନ୍ତ ଚିପି) ହେଲା ଯେ ହସ .... ହେଲା ଯେ ହସ ....... ନନ୍‌ସେନ୍‌ସ .... ଇଡ଼ିୟଟ ....

ଲିଲି - (ହସ ସମ୍ଭାଳି ନ ପାରି ଚାପି ଚାପି ହସିଲା) ହିଃ... ହିଃ... ହିଃ...

ବକ୍ରେ - ତତେ ନିଜେ ହସ ମାଡି ଯାଉଚିଟି ? ନାଇଁ ନାଇଁ ତତେବି ହସ ମାଡ଼ିଯାଉଚିଟି ? ତଥାପି ତୁ କହୁଚୁ ଏଠିକି ଯା ସେଠିକି ଯା ?

ଲିଲି - ବୁଝିଲି - ତୋ ନାଁଟା ପାଇଁ ଯାହା ଏତେ କଥା । ହେଲେ ଆମ ଗାଁ ଠାକୁରଙ୍କ ନାଁ ଅନୁସାରେ ପରା ତୋ ନାଁ ଦିଆ ହେଇଥିଲା । ପୁଅଟିଏ ପାଇଁ ପରା ଖୁଡୀ ତାଙ୍କ ପାଖରେ ମାନସିକ କରିଥିଲେ ।

ବକ୍ରେ - ବୁଝିଲୁ ଅପା ଆମ ଗାଁ ଠାକୁରଙ୍କର କନିଆଦେଖା କି ବାହାହେବା ଝମେଲା ନ ଥିଲା । ସେଇଥିପାଇଁ ତାଙ୍କର ଚଳିଗଲା । ନ ହେଲେ ସେ ଠାକୁରାଣୀମାନଙ୍କ ମେଳାରେ କେମିତି ଅପଦସ୍ତ ହେଉଥାନ୍ତେ ଦେଖିଥାନ୍ତୁ ।

ଲିଲି - (ହସିଲା) ହେଲା ଏବେ ତୋ ନାଁଟା ଟିକେ ପୁରୁଣା କାଳିଆ ହେଇଗଲା ତ କଣ ହେଇଗଲା ସେଥୁ ? ତୁ ଏତେ ପାଠ ପଢ଼ିଚୁ । ନିଜର ବିଜିନେସ

କରୁଚୁ । ଦେଖିବାକୁ ଏତେ ସୁନ୍ଦର । ଦାଦା ଖୁଡୀଙ୍କର ଗୋଟିଏ ବୋଲି ପୁଅ । ସେ ଝିଅମାନେ କଣ ତତେ ନାପସନ୍ଦ କରି ସେମିତି କହୁଚନ୍ତି ? ତତେ ଥଟ୍ଟାରେ କହି ଦଉଚନ୍ତି ନା । ହଉ ଠିକ୍ ଅଛି । ମୁଁ ଏଠି ଯାଇ ଆଗରୁ କହିଦେବି । ତତେ କେହି ଥଟ୍ଟା ପରିହାସ କରିବେ ନାହିଁ ।

ବକ୍ରେ - ଏଇ ଅପା ! ହୁସିଆର । ଜମା ସେମିତି କାମ କରିବୁ ନାହିଁ ଟି । ଥରେ ଗୋଟେ ଯାଗାରେ ବଡ ଅପା ଯାଇ ସେୟା କହିଦେଲା ବୋଲି କଣ_ହେଲା ଜାଣିଚୁ ? ଆମେ ଯେମିତି ଯାଇ ସେଠି ପହଞ୍ଚୁଚୁ ଗୋଟେ ଝିଅ ଭିତରୁ ଥାଇ କହୁଚି ହେ ସମବେତ ଜନତା ! ମୁଖ୍ୟ ଅତିଥି ସାର୍ ଆସି ଗଲେ ! ଯୋଉ ଝିଅମାନେ ତାଙ୍କ ସାଙ୍ଗରେ ବିଜିନେସରେ ମାନ୍ଦା ଅବସ୍ଥା ହେଲେ କନ୍ଦାକଟା କରି ତାକୁ କେମିତି ସୁଧୁରା ଯାଇପାରେ କାଲ ଆଗରେ ମୂଳା ତୋବେଇଲେ କାହିଁକି ରାସ୍‌ଉ ରାସ୍‌ଉ ଶବ୍ଦ ହୁଏ ବଙ୍କାଗଣ୍ଡିରେ ବାତ ହେଲେ ତାକୁ କାହିଁକି ବଙ୍କାଗଣ୍ଡି ବାତ କହନ୍ତି ଇତ୍ୟାଦି ଇତ୍ୟାଦି ଗୁରୁତର ବିଷୟମାନ ଆଲୋଚନା କରିବାକୁ ଚାହାନ୍ତି ସେମାନେ ରହନ୍ତୁ । ଅନ୍ୟମାନେ ଯଦି ଚାହାନ୍ତି ତା ହେଲେ ନେପଥ୍ୟରେ ରହି ନିଜ ନିଜ ଭିତରେ ଥଟ୍ଟା ପରିହାସ ହେଇପାରନ୍ତି ।

ଲିଲି - (ନିଶବ୍ଦରେ ହସି ହସି) ନାଇଁ... ନାଇଁ... ଏଠି ସେମିତି କିଛି ହବ ନାହିଁ । ତୁ ଡର ନା । ଚାଲ୍ ।

ବକ୍ରେ - ଏଠି ସେଠି ସବୁଠି ସେଇ ଚୋକାପନ୍‌ଝା । ଏ ସବୁଗୁଡାଙ୍କର ଆଦତ୍ ସମାନ । ଆଚ୍ଛା ଅପା ଏ ଝିଅର ଓଜନ ?

ଲିଲି - ଝିଅର ଓଜନ ? ସେ କଥା ତ ମୁଁ ଜାଣି ନାହିଁ ।

ବକ୍ରେ - ତା ହେଲେ ?

ଲିଲି - କଣ ତାହେଲେ ?

ବକ୍ରେ - ଧର ତୁ କିଛି ନ ଜାଣି ଝିଅ ଦେଖିବାକୁ ଚାଲିଗଲୁ । ସେଠି ଯାଇ ଯଦି ତୁ ଦେଖିଲୁ ଯେ ଝିଅର ଓଜନ ତୋଠୁଁ କାହିଁରେ କଣ ବେଶୀ ତାହେଲେ ?

ଲିଲି - ଏ ଝିଅ କଥା ମୁଁ ଜାଣିଚି । ୟାର ଓଜନ ଜମା ବେଶୀ ନୁହେଁ ।

ବକ୍ରେ - ତୁ ଜମା ଜାଣିନୁଁ । ଗୋଟେ ପତଳି ଝିଅକୁ ଦେଖେଇ ଦେବେ- ତାପରେ ଗୋଟେ ଘୋର ମୋଟୀ ଝିଅକୁ ହାବୁଡେଇ ଦେବେ ।

ଲିଲି - ତାହେଲେ ତୁ କହୁଚୁ ଆମେ ଗୋଟେ ଓଜନ ଯନ୍ତ୍ର ନେଇକି ଯିବା- ସେଠି ଯାଇ କହିବା ଅସଲି ଝିଅକୁ ହାଜର କର- ଆମେ ତାକୁ ଓଜନ କରିବୁଁ ?

ବକ୍ରେ - ଓହୋ ଅପା ! ତୁ ତ କଥାଟା ଜମା ବୁଝୁ ନାହୁଁ ।

ଲିଲି - (ରାଗିଗଲେ) ମୁଁ ଏତେ କଥା ବୁଝେ ନାହିଁ । ମୁଁ ଯାଉଚି ଖୁଡୀଙ୍କି ଫୋନ କରିଦେବି । ସେ ତାଙ୍କର ଯନ୍ତ୍ରଫନ୍ତ୍ର ଧରି ଆସିବେ । ଝିଅ ଦେଖିବେ । ଓଜନ କରିବେ । ତାପରେ ଯାହା କରିବାର କରିବେ । ମୁଁ ଯାଉଚି - (ଯିବାକୁ

ବାହାରିଲା)

ବକ୍ରେ - ଅପା - ଅପା - ଶୁଣ ମ - ଶୁଣ - ଶୁଣ -

ଲିଲି - ଶୁଣିବି କଣ ଟେ ? କଣ ଟେ ଆଉ ଶୁଣିବି ଘଡ଼ିଏ ହେଲା ବୁଝେଇ ବୁଝେଇ ମୋ ପାଟି ଥୋବରା ହୋଇଗଲାଣି । ଯାର ଚାଲିଛି ନେହିଁ ନେହିଁ - ମୁଁ କିଛି ଶୁଣିବି ନାହିଁ । ମୁଁ ଯାଉଚି ।

ବକ୍ରେ - (ପଛରେ ଦୁଇତିନି ପାଦ ଯାଇ) ଅପା ! ଅପା ! (ଲିଲି ଚାଲିଗଲା) ଧେତ୍ ତେରୀ !

ପୁର - (ସର୍ବତ ଗ୍ଲାସ୍ ଧରି ଆସିଛି) ଆଜ୍ଞା ଅପା ?

ବକ୍ରେ - ଗଲେଣି !

ପୁର - ଗଲେଣି ? କୁଆଡେ ? ଆପଣ ଗଲେ ନାହିଁ ତାଙ୍କ ସାଙ୍ଗରେ ? ସେ କଣ ଏକା ଏକା ଝିଅ ଦେଖିବେ ?

ବକ୍ରେ - ପୁରନ୍ଦର ! ହମ୍ ନେହିଁ ଦେଖେଙ୍ଗେ ।

ପୁର - କାହିଁକି ନେହିଁ ଦେଖେଙ୍ଗେ ?

ବକ୍ରେ - ପୁରନ୍ଦର ! ଅଷ୍ଟବକ୍ରଙ୍କ ନାଁ କାହିଁକି ଅଷ୍ଟବକ୍ର ହେଲା ତୁ ଜାଣିଚୁ ?

ପୁର- ନାହିଁ ତ ସାର୍ ।

ବକ୍ରେ - ପାଞ୍ଜିମାନଙ୍କରେ ଯୋଉ ସଂକ୍ରାନ୍ତି ପୁରୁଷମାନଙ୍କର ଛବିଥାଏ ସେମାନଙ୍କର ଓଜନ କେତେ ଜାଣିଚୁ ?

ପୁର- ନାହିଁ ତ ।

ବକ୍ରେ - ବକ୍ରାଦି ପୁରାଣରେ ବକ୍ରାବକ୍ରମାନଙ୍କର କନିଆଦେଖା ବିଷୟରେ କିଛି ଉପାଖ୍ୟାନ ଅଛି କି ?

ପୁର- ଥିଲେ ଥିବ । ମୁଁ ତ ଆଜ୍ଞା ସେ ପୁରାଣ ଫୁରାଣ କିଛି ପଢିନାହିଁ ।

ବକ୍ରେ - କିଛି ତ ଜାଣିନାହୁଁ । କିଛି ତ ପଢିନାହୁଁ । ଏଠିକି ଯା ସେଠିକି ଯା କହିଦଉଚୁ କେମିତି ? ସେଥର ତୋରି କଥାରେ ପଡି ଦିତିନିଟା ଲେଖାଁ ଜାମାପଟା ପିନ୍ଧି କନିଆ ଦେଖି ଚାଲିଗଲି ଯେ ତାଙ୍କ ଭିତରୁ ଗୋଟେ ଫାଜିଲ୍ ଟୋକୀ ସେ କଥା କେମିତି ଜାଣିପାରିଲା କେଜାଣି ମୋତେ ପଚାରୁଚି ବକ୍ରବାବୁ ଆପଣଙ୍କର ଆଉ ଜାମାପଟା ତ ନିଶ୍ଚେ ଥିବ । ଝିଅଟା ଦେଖିବାକୁ ଭାରି ସୁନ୍ଦର । ତା କଥା ବି ଭାରି ମିଠା ମିଠା ଶୁଭୁଥାଏ । ମୁଁ ସେ ଟୋକୀଟାର ମତଲବ୍‌ଟା ବୁଝିପାରିଲି ନାହିଁ । ମୁଁ ଯେମିତି କହିଦେଇଚି ହଁ ଅଛି ବୋଲି ସେ ବଜାରୀ ଟୋକୀ ମୋତେ କଣ କହିଲା ଜାଣିଚୁ ? ମୋତେ କହୁଚି ତାହେଲେ ସେ ସବୁକୁ ବି ପିନ୍ଧି ଚାଲି ଆସିଲେ ନାହିଁ- ଆହୁରି ମୋଟା ଦିଶିଥାନ୍ତେ । ତାପରେ ସେ ଝିଅ ପକ୍ଷଙ୍କର ଯୋଉ ହସ ...

ପୁର - (ହସି ଉଠିଲା) ହାଃ... ହାଃ... ହାଃ...

ବକ୍ରେ - ପୁରନ୍ଦର ! ତତେ ହସ ମାଡ଼ିଯାଉଚି ? ନାଇଁ ନାଇଁ ତତେ ହସି ମାଡିଯାଉଚି । ତୁଟା ଗୋଟେ ନିହାତି ବାଜେ ଲୋକ ଅଛୁ ଦେଖୁଚି । ତୁଇ ମୋତେ କହିଥିଲୁ କି ନାହିଁ ଆହୁରି ତିନିଚାରିଟା ଜାମା ପିନ୍ଧି ପକେଇ ଯିବାକୁ ?

ପୁର - ଆପଣ ତ ନିଜେ କହିଲେ ପୁରନ୍ଦର ରେ ଝିଅ ଦେଖି ଯିବି ଯେ ମୁଁ ଏତେ ପତଳା ହେଉଚି ବୋଲି ସେ ଟୋକୀଗୁଡା ଯଦି ମୋତେ ଥଟ୍ଟା କରନ୍ତି କଣ କରିବା କହିଲୁ । ହେଲେ ମୁଁ କଣ କହିଥିଲି ସେ ଝିଅଟା ସୁନ୍ଦର ବୋଲି ତା ପାଖରେ କଥାଟା ମାନିଯିବାକୁ ?

ବକ୍ରେ - ପୁରନ୍ଦର ! ସେଇ... ସେଇ... ସେଇ... ସୁନ୍ଦରୀ ଝିଅଗୁଡା ଯାବତ୍ ସଇତାନ୍ । ଦିତିନି ମାସ ତଳେ ଗୋଟେ ଯାଗାକୁ ଝିଅ ଦେଖି ଯାଇଥିଲି ଯେ ତାଙ୍କ ଭିତରୁ ଗୋଟେ ଝିଅ ମୋତେ କଅଁଳେଇ କଅଁଳେଇ ପଚାରୁଚି- ବକ୍ରବାବୁ ! ଆପଣ କାହିଁକି ଏତେ କୃଶ ? ଆବେ ମୁଁ ଗୋଟେ ଭଦ୍ରଲୋକ ତମ ଘରକୁ ତକାହକା ହେଇ କନିଆ ଦେଖିବାକୁ ଆସିଚି- ମୋତେ ପଚାରୁଚି ଆପଣ କାହିଁକି ଏତେ କୃଶ ! ଆବେ ମୁଁ କୃଶ ହେଲି ତ ତୋର ସେଥିରେ କଣ ଅସୁବିଧା ହେଇଗଲା ବେ ? ସେ ଟୋକୀଟା ଉପରେ ଯୋଉ ରାଗ ହଉଥିଲା ତାକୁ ଯଦି ମୁଁ ଧରି ପକେଇଥାନ୍ତି ନା ତାହେଲେ ତାକୁ ଏକଦମ୍- ଏକଦମ୍ କୃଶିପାଇ କରିଦେଇଥାନ୍ତି । ଯାନେ ଦୋ !

ପୁର - ନୁହେଁ ଆଉ କଣ ? ଖାଲି ଯାହା ସୁନ୍ଦରୀ ଝିଅଟେ ବୋଲି ଆପଣ ତାକୁ ଛାଡି ଦେଲେ ନା ନ ହେଲେ- କିନ୍ତୁ ସାର୍ ସେ ଝିଅଟାର ଓଜନ କେତେ କି ? ଷାଠିଏ ନା ସତୁରୀ ନା ଆହୁରି ବେଶୀ ?

ବକ୍ରେ - ପୁରନ୍ଦର ! ଥଟ୍ଟା ହଉଚି- ଥଟ୍ଟା ? ମୋର ଓଜନ ଏକଚାଳିଶ କେଜି ବୋଲି ତୁ ଭାବୁଚୁ ମୁଁ ସେ ମୋଟୀ ଝିଅଟାକୁ ଡରିଗଲି ? ମୁଁ ତାକୁ ଜମା ଡରି ନାହିଁ । (କିଂଚିତ ଉଚସ୍ୱରରେ) ମୁଁ ତାକୁ ଜମା ଡ଼ରିନାହିଁ । ମୁଁ ତାକୁ କ୍ଷମା କରିଦେଲି ।

ପୁର - କ୍ଷମା କରିଦେଲେ ଭଲ କଲେ । ଏକଚାଳିଶ କେଜିରେ ଗୋଟେ ଷାଠିଏ କି ସତୁରୀ କି ଅଶୀ କି ଆହୁରି ବେଶୀ ଓଜନର ଝିଅଟାକୁ କୃଶିପାଇ କରିଦବାଟା ଗୋଟେ ଭାରି ଝମେଲା କାମ ତ-

ବକ୍ରେ - (ଦମ୍ଭିଲା ସ୍ୱରରେ) ହେଲେ ପୁରନ୍ଦର ! ଅଉର୍ ନେହିଁ ।

ପୁର - (ବୁଝି ନପାରି) ସାର୍ ?

ବକ୍ରେ - (ଟିକେ ଜୋର୍ ଦେଇ) ଅଉର୍ ନେହିଁ । ବୁଝିଲୁ ପୁରନ୍ଦର ଏ ଟୋକୀ ପନ୍ଝା ଯାହା ତ ଥଟ୍ଟା ପରିହାସ କଲେ କଲେ ତା ଉପରକୁ ମୋତେ କେତେ ରକମର ନାଁ ଦେଇ ସାରିଲେଣି ଜାଣିଚୁ ? କିଏ କହୁଚି ବଡାଖୁଣ୍ଟ ତ କିଏ କହୁଚି ସଂକ୍ରାନ୍ତି ପୁରୁଷ ତ କିଏ କହୁଚି ପକ୍ଷୀତ୍ରାସ । ବୁଝିଲୁ ପୁରନ୍ଦର ! ମୁଁ ଯଦି ଆଉ ପାଞ୍ଚସାତ

ଯାଗାକୁ ଝିଅ ଦେଖିବାକୁ ଚାଲିଯିବି ନା ତାହେଲେ ଏ ଟୋକୀ ପନ୍ଝା ମୋର ଏକଦମ୍ ଅଷ୍ଟୋଉର ଶତନାମ କରିଦେବେ । ଅତଏବ...

ପୁର - ଅତଏବ ?

ବକ୍ରେ - ଅତଏବ ଏଥର ଝିଅ ଦେଖା ବନ୍ଦ । ଥଟ୍ଟା ପରିହାସ ବନ୍ଦ । ହସକୁର୍କୁଟି ବନ୍ଦ । ନାଁ ଦିଆ ବନ୍ଦ । ସବୁ ବନ୍ଦ ।

ପୁର - ଅତଏବ ?

ବକ୍ରେ - ମୁଁ ଏଥର ମାଛମାଂସ ଅଣ୍ଡାଫଣ୍ଡା ମିଠାଫିଠା କସିକିରି ଖାଇବି । ଏକ ଚାଳିଶ କେଜିକି ନେଇ ଏକାଅଶୀରେ ଉଠେଇବି । ତାପରେ ଦେଖିବି କୋଉ ଫାଜିଲ୍ ଟୋକୀ ମୋତେ ସେମିତି ଥଟ୍ଟା ପରିହାସ କରୁଚି । ତାକୁ ଯଦି ଗୋଟେ ବୟାଅଶୀ କେଜିଆ ମୁଥ ଦେଇ ଏକଦମ୍ ସାବାଡ କରି ନ ଦେଉଚି - ପୁରନ୍ଦର ! ଅତଏବ ...

ପୁର - ଅତଏବ ?

ବକେ - ଅତଏବ (ହାତ ମୁଠା କରି ଉପରକୁ ଉଠେଇ ସ୍ଲୋଗାନ ଦେଲା ପରି) On to ଅପରେସନ ଏକାଅଶୀ କେଜି- On to ଅପରେସନ ଏକାଅଶୀ କେଜି- On to...

ପୁର - (ପୂରଣ କଲା ପରି) ଅପ୍ରେସନ ଏକାଅଶୀ କେଜି ।

ବକ୍ରେ - On to...

ପୁର - ଅପ୍ରେସନ ଏକାଅଶୀ କେଜି- ଅପ୍ରେସନ ଏକାଅଶୀ କେଜି (କହି କହି ଉଭୟେ ଭିତରକୁ ଚାଲିଗଲେ) ।

<u>ଦ୍ୱିତୀୟ</u>

(ଦୁଇଦିନ ପରେ । ସକାଳ । ସେଇ ଡ୍ରଇଂ ରୁମ୍ । ପୁରନ୍ଦର ରୁମ୍‌ର ଜିନିଷପତ୍ର ସଜାସଜି କରୁଛି ଓ ଗୁଣୁଗୁଣୁ ସ୍ୱରରେ ଗୀତ ଗାଉଛି । ହଠାତ୍ ଟେବୁଲ୍ ଉପରେ ଖଣ୍ଡେ କାଗଜ ଦେଖି ଉଠେଇ ପଢ଼ିଛି)

ପୁର - କୁକୁଡା ମାଂସ ଅଢେଇ କେଜି ଅଣ୍ଡା ବାରଟା ଦୁଧ ତିନି ଲିଟର ଛେନା- (କିଂଚିତ ଉଚ୍ଚସ୍ୱରରେ) କୁକୁଡା ମାଂସ ଅଢେଇ କେଜି ଅଣ୍ଡା ବାରଟା ଦୁଧ ତିନି ଲିଟର ଛେନା - ସାର୍ ! ଆପଣ ଏ ତାଲିକାରେ ଯେତେ ଯେତେ ଜିନିଷ ସବୁ ଲେଖିଛନ୍ତି ସେ ସବୁ କଣ ଗୋଟେ ଦିନରେ ଖାଇବେ ?

ବକ୍ରେ - (ବ୍ୟାୟାମ୍ କରୁଥିବା ଅବସ୍ଥାରେ କହି କହି ଆସିଛି) ଅଲବତ୍ ଖାଇବି । ଅଲବତ୍ ଖାଇବି ।

ପୁର - ଅଲବତ୍ ଖାଇବେ ?

ବକ୍ରେ - ପୁରନ୍ଦର ! ତୋରି ବୁଦ୍ଧିରେ ପଡି କୁକୁଡା ଖାଦ୍ୟ ଖାଇ ଖାଇ ମୁଁ କୁକୁଡା ପରି ହେଲିଣି । ଆଉ ମୁଁ ତୋ ବୁଦ୍ଧିରେ ପଡିବି ? ଜମା ପଡିବି ନାହିଁ । ଯେତିକି

ଖାଉଚି ସେତିକି ଖାଦ୍ୟ ଖାଉଥିଲେ ଏକାଅଣୀ କେଜି ହବାକୁ ମୋତେ କେତେ ବର୍ଷ ଲାଗିବ ଜାଣିଚୁ ? ଏକାଅଣୀ ବର୍ଷ- ।

ପୁର - ତା ବୋଲି ଆପଣ ଏତେ ଜିନିଷ ଏକାଦିନେ ଖାଇବେ ? ଜମା ଖାଇ ପାରିବେ ନାହିଁ । ମୁଁ ଆଣିବି ନାହିଁ ।

ବକ୍ରେ - ଖାଇବି ନାହିଁ ଆଉ କଣ ସେ ବଜାରୀ ଝିଅଗୁଡା ମୋତେ ସେମିତି ଥଟ୍ଟା ପରିହାସ କରୁଥିବେ- ମୁଁ ଶୁଣୁଥିବି ? ନେହିଁ । ନେହିଁ ଶୁଣେଙ୍ଗେ । ଖାଏଙ୍ଗେ ପିଏଙ୍ଗେ ଶୁଏଙ୍ଗେ ମୋଟା ହୋଏଙ୍ଗେ । ବାସ୍ - (ଯାତ୍ରା ଗୀତ ସ୍ୱରରେ ଗାଇଲା) ଗଣ୍ଡା ଗଣ୍ଡା ଅଣ୍ଡା ପଣ୍ଡା ସବୁ ଖାଇ ଗଣ୍ଡାର ପରି ମୁଁ ହୋଇବି ରେ/ ଦଣ୍ଡା ପରି ପେଣ୍ଡା ଫୁଲେଇ ଫାମ୍ପେଇ ବାଘ ପରି ନିଶ ହଲେଇବି ରେ/ ଏକ୍‌ଚାଳିଶରୁ ମୁଁ ହେବି ଏକାଅଣୀ/ ଦେଖିଲା ମାତ୍ରେ ତାଙ୍କର ଉଡିବ ଫାକାପି/ ମିଁ... ମିଁ.. ହେବେ ଯେହ୍ନେ ପୋଷା ପୁସି/ ବୁଦ୍ଧି ଘରେ ସବୁ ହେବ କାଳି ବାସି/ ଖାଇ ଖାଇ ମାଲ୍ ହେବି ଲାଲେ ଲାଲ୍/ ଡୋଲ ପରି ପେଟ ବଢାଇବି ରେ/ ମୁଥ ମୋର ହେବ ଏକାଅଣୀ କେଜି/ ପଦେ ଥଟ୍ଟା କଲେ ହେବି ଗଳଗାଜି/ ନଣ୍ଡା କରିବି ତା ଚାକୁଣ୍ଡା ମୁଣ୍ଡକୁ/ ଦାନ୍ତଫାନ୍ତ ତାଡି ପକାଇବି ରେ/ ଗଣ୍ଡା ଗଣ୍ଡା ଅଣ୍ଡା ପଣ୍ଡାସବୁ ଖାଇ ଗଣ୍ଡାର ପରି ମୁଁ ହୋଇବି ରେ- (ସ୍ଲୋଗାନ ଦେଲା ପରି) ଅପରେସନ ଏକାଅଣୀ କେଜି- ଅପରେସନ ଏକାଅଣୀ କେଜି- (କହି କହି ଭିତରକୁ ଚାଲିଗଲା) ।

ପୁର - (ହସି ହସି) କଣ ହେଲା ? (ଗାଇଲା) ଗଣ୍ଡା ଗଣ୍ଡା ଅଣ୍ଡା ପଣ୍ଡାସବୁ ଖାଇ ଗଣ୍ଡାର ପରି ମୁଁ ହୋଇବି ରେ- (ହସିଲା) ହାଃ ହାଃ ହାଃ- (ହଠାତ୍ କବାଟରେ ଠକ୍ ଠକ୍ ଶବ୍ଦ) କିଏ ?

କୀଚକ - (ବାହାରେ ଗମ୍ଭୀର ସ୍ୱରରେ) କବାଟ ଖୋଲ ।

ପୁର- କାହିଁକି ? ଆପଣ କିଏ ?

କୀଚକ - (ବାହାରେ) ଖୋଲିଲେ ଜାଣିବ ।

ପୁର - ବାବୁ ଅପରେସନ ଏକାଅଣୀ କେଜିରେ ବ୍ୟସ୍ତ । ବେଳ ନାହିଁ । ପରେ - ପରେ ।

କୀଚକ - (ବାହାରେ ଉଚ୍ଚ ସ୍ୱରରେ) ଜଲଦି ଖୋଲ କହୁଚି ।

ପୁର - ପରେ କହିଲି ପରା ।

କୀଚକ - ଖୋଲିବୁ ନା ଦେଖିବୁ ?

ପୁର - ଓହୋ ! ବଡ ଝମେଲା ଲୋକ ଯେ ! (ଯାଇ ଖୋଲିଦେଇ ଦେଖି ଟିକେ ଶଙ୍କିତ ହୋଇଗଲା) ଆଜ୍ଞା ! ଆପଣ- ଆପଣ ?

କୀଚକ - (ଜୋର୍ ପାଦ ପକାଇ ଭିତରକୁ ପଶିଆସିଲେ । ପୁରନ୍ଦର ଡ଼ରିଯାଇଛି । ସେ ବି ପଛେଇ ପଛେଇ ଭିତରକୁ ପଶି ଆସିଲା) କବାଟ ଖୋଲିବାକୁ ଘଡିଏ

କାଙ୍କ ଜବାବ ସୁଆଇ ଚାଲିଚି ?

ପୁର - ଆଜ୍ଞା ମୁଁ ପୁରନ୍ଦର । ପୁରନ୍ଦର ଦଳେଇ । ହେଲେ ଆଜ୍ଞା ଆପଣ... ?

କୀଚକ - କାଣ୍ଡିବଗ କାହିଁ ?

ପୁର - ଆଜ୍ଞା କାଣ୍ଡିବଗ ତ ଏଠି ନଥାନ୍ତି । ଆମ ସାର୍ ବିଜିନେସ୍ କରନ୍ତି ଯେ ସେ ତ କାଣ୍ଡିବଗରେ ବିଜିନେସ୍ କରନ୍ତି ନାହିଁ ।

କୀଚକ - ମୁଁ ପଚାରୁଚି କାଣ୍ଡିବଗ କାହିଁ ?

ପୁର - ଆଜ୍ଞା ମିଳିବେ ମିଳିବେ- ବହୁତ ମିଳିବେ । ଆପଣ ଘଣ୍ଟେଶ୍ୱର ମନ୍ଦିର ପାଖ ପୋଖରୀକି ଚାଲିଯାନ୍ତୁ । ଏଇ ରାସ୍ତାରେ ସିଧା । ଆଗରେ ଗୋଟେ ପାନ ଦୋକାନ ପଡିବ । ସେଇଠି -

କୀଚକ - Shut up !

ପୁର - ଆଜ୍ଞା ମୋ କଥାଟା କଣ ସରିଲାଣି ଯେ ମୋତେ Shut up କରି ଦଉଚନ୍ତି ? ଆପଣ ସେଇ ପାନଦୋକାନ ପରେ ଡାହାଣପଟକୁ ମୋଡିଯିବେ । ମନ୍ଦିର ଦିଶିଯିବ । ସାଙ୍ଗରେ କେଜିଏ ଛୋଟ ମାଛ ନେଇଥିବେ । ପାଣିରେ ତାକୁ ପକଉଥିବେ । କାଣ୍ଡିବଗ ତ ଖାଲି ମାଳ ମାଳ ମାଳ ମାଳ ମାଡି ଆସିବେ ।

କୀଚକ - Shut up ! ମାଳ ମାଳ... ମାଳ ମାଳ ! ମୁଁ ତମ ଘଣ୍ଟ ପୋଖରୀ କାଣ୍ଡିବଗ କଥା କହୁଚି ? ତମର ଏଇଠି ଯୋଉ କାଣ୍ଡିବଗ ଅଛି ସେଇ କାଣ୍ଡିବଗ କଥା କହୁଚି । ତାକୁ ଡାକ । ଜଲ୍ଦି ।

ପୁର - ଆଜ୍ଞା କହିଲି ପରା ଆମର ଏଠି...

କୀଚକ - (ପାଟି କରି) Shut up !

ବକ୍ରେ - (ଭିତରୁ) ପୁରନ୍ଦର ! କିଏ ହଲ୍ଲା କରୁଚି ସେଠି ?

ପୁର - ଜଣେ ବାବୁ ।

ବକ୍ରେ - (ଭିତରୁ) କିଏ ସେ ବାବୁ ? ତାଙ୍କ ନାଁ କଣ ?

ପୁର - ଆଜ୍ଞା ! ସାର୍ ପଚାରୁଚନ୍ତି ଆପଣଙ୍କ ନାଁ କଣ ।

କୀଚକ - Shut up !

ପୁର - ସାର୍ ! ତାଙ୍କ ନାଁ କୁଆଡ଼େ Shut up - ନାଇଁ ନାଇଁ ଆଜ୍ଞା ତାଙ୍କ ନାଁ କହୁନାହାନ୍ତି । ମୁଁ ପଚାରିଲି ଯେ ମୋତେ ସଟ୍‌ଅପ କରିଦେଲେ । ଡେଙ୍ଗା ହେଇ ମୋଟା ମୋଟା ନିଶ ଲମ୍ବ ଲମ୍ବ କଲି କେଜାଣି କେତେ ଡେଙ୍ଗା । ଇମ୍ରାନ୍ ଖାଁ ଦାଗୀ ପରି ଦିଶୁଚନ୍ତି ।

କୀଚକ - (ଟେବୁଲରେ ଠେଙ୍ଗିଣୀ ପିଟି) Shut up- ଯେତେ ସବୁ ଆଜେବାଜେ କଥା । ଡାକ କାଣ୍ଡିବଗକୁ ଡାକ । ଜଲ୍ଦି ।

ପୁର - (ବକ୍ରେଶ୍ୱରକୁ) ସାର୍ ! କାଣ୍ଡିବଗ କୋଉଠି ମିଳନ୍ତି ପଚାରୁଥିଲେ । ମୁଁ ଘଣ୍ଟ ପୋଖରୀକୁ ଯିବାକୁ କହିଲି ଯେ ମୋତେ କହୁଚନ୍ତି ଏଇଠି ଯୋଉ କାଣ୍ଡିବଗ

ଅଛି ଡାକୁ ଡାକ୍ । (କୀଚକେଶ୍ୱରଙ୍କୁ) ଆଜ୍ଞା ଆମର କଣ ଏଠି ପୋଷା ବଗଟେ ଅଛି ଯେ ଡାକିଲେ ଆସିବ ?

କୀଚକ - ଡାକୁନୁ ନା ଦେଖିବୁ ?

ବକ୍ରେ - (ଭିତରୁ) ହଉ ଠିକ୍ ଅଛି । ମୁଁ ଯାଉଚି ଦେଖୁଚି ।

ପୁର - ସାର୍ ଦେଖିକି ଆସିବେ । ତାଙ୍କ ହାତରେ ଗୋଟେ ଆବୁଆବୁଆ ଠେଙ୍ଗିଣୀ ଅଛି ।

ବକ୍ରେ - (ଭିତରୁ) ପରୱା ନେହିଁ । ମୁଁ ବି ଗୋଟେ ଗାବୁଗାବୁଆ ଠେଙ୍ଗିଣୀ ଧରି ଯାଉଚି । (ବାହାରକୁ ଆସିଲା । କିନ୍ତୁ କୀଚକକୁ ଦେଖି ଡ଼ରିଯାଇଛି) - ଇଲୋ ବାବା ଲୋ (ପୁରନ୍ଦର ପାଖକୁ ଧାଇଁ ଆସିଛି)

କୀଚକ - (ବକ୍ରେଶ୍ୱରକୁ ଦେଖିଲା ମାତ୍ରେ) ତମେ... ତମେ ସେଇ କାଣ୍ଡିବଗ ? You are that କାଣ୍ଡିବଗ ? ମୁଁ ଘଡିଏ ହେଲା ପଚାରୁଛି । ଏ ଲୋକ ମୋତେ-କହୁଚି କାଣ୍ଡିବାଗ ପାଣ୍ଡିବଗ ଏଠି କେହି ନାହାନ୍ତି ।

ପୁର - ଆଜ୍ଞା ସାର୍ଙ୍କ ନାଁ ତ କାଣ୍ଡିବଗ ନୁହେଁ । ସାର୍ଙ୍କ ନାଁ -

କୀଚକ - Shut up - ସେଇ ତାଙ୍କରି ନାଁ କାଣ୍ଡିବଗ ।

ବକ୍ରେ - (କିଛି ସାହସ ସଂଚୟ କରି କିଛି ଗାମ୍ଭୀର୍ଯ୍ୟ ସହ) ଆପଣ- ଆପଣ ମୋତେ ସେମିତି କହିବାଟା -

ପୁର- ଆଜ୍ଞା ସାର୍ଙ୍କ ନାଁ ପରା ହେଲା -

କୀଚକ- (ମଝିରେ) ତମକୁ ପଚରା ଗଲା ? ତୁମକୁ ପଚରାଗଲା କି ? ସାର୍ ତାଙ୍କ ନାଁ ଜାଣତି ନାହିଁ ? ସେ କହି ପାରିବେ ନାହିଁ ?

ପୁର- କହି ପାରିବେ ଯେ -

କୀଚକ- ତାହେଲେ ତମେ କାହିଁକି କହୁଚ ? ତମକୁ Discipline ଜଣାନାହିଁ ? ତମେ ଆର୍ମିରେ ଥିଲେ ତମର ଏଇନା କଣ ହେଇଥାନ୍ତା ଜାଣିଚ ? ସାଙ୍ଗେ ସାଙ୍ଗେ କୋର୍ଟ ମାର୍ସାଲ । ପଚିଶ କେଜି ଇଟା ବୋହି ପାଞ୍ଚ କିଲୋମିଟର ଦୌଡ ନ ହେଲେ ମାସେ ପର୍ଯ୍ୟନ୍ତ ଦିନକୁ ଘଣ୍ଟେ ଲେଖାଁ ଅଧିକା P. T. । ଏକଦମ୍ ସାବାଡ୍ । Right ? ଏଥର ଚୁପ୍‌ଚାପ୍ ଆଟେନ୍‌ସନରେ ଛିଡ଼ା ହୁଅ । ତମ ସାର୍ କାହିଁକି ସେମିତି ଅଷ୍ଟବକ୍ର ଠାଣିରେ ଛିଡା ହେଇଛନ୍ତି । (ହଠାତ୍ ପାଟି କରି) ସିଧା ହେଇ ଛିଡା ହୁଅ- ସିଧା ହେଇ ଛିଡା ହୁଅ । (ବକ୍ରେଶ୍ୱର ନିଜ ଛିଡା ହେବା ଭଙ୍ଗୀ ସଂପର୍କରେ ସଚେତନ ହେଲା ।) ଏଥର ଏ ବାବୁଙ୍କୁ ପ୍ରଶ୍ନ । ମିଷ୍ଟର ବକ୍ରେଶ୍ୱର ! ତମେ ମୋତେ ଚିହ୍ନିଚ ?

ବକ୍ରେ - ନେହିଁ - ନାଇଁ ନାଇଁ ଆଜ୍ଞା ଚିହ୍ନିନାହିଁ ।

କୀଚକ - All right- ମୁଁ ଚିହ୍ନେଇ ଦଉଚି । ମୁଁ ହଉଚି କୀଚକେଶ୍ୱର ହର୍ଷବାଲା । ମୁଁ ଆର୍ମିରେ ଥିଲାବେଳେ ହର୍ଷମାନେଘୋଡାମାନଙ୍କ ଦାୟିତ୍ୱରେ ଥିଲି । ସେଇଥି

ପାଇଁ ମୋ ଡାକ ନାଁ ହର୍ଷବାଲ । ତମେ କାଲି ଯୋଉ ଝିଅକୁ ଦେଖିବାକୁ । ଗଲ ନାହିଁ ମୁଁ ତାର ବାପା ।

ବକ୍ରେ - (ହଠାତ୍ ସଚେତନ ହୋଇ ଓ ଠେଙ୍ଗିଣୀକୁ ଲୁଚେଇ ଦେଇ) ଏଁ ! ଆପଣ- ଆପଣ ସେ ଝିଅର ବାପା ? ମାନେ ସେ ଝିଅ ଆପଣଙ୍କ ଝିଅ ? ମାନେ ସେ ଝିଅର ବାପା ହଉଚନ୍ତି ଆପଣ ? ଦୁଃଖ-ଦୁଃଖ-ବହୁତ ଦୁଃଖ- ମୁଁ ଆପଣଙ୍କୁ ଚିହ୍ନି ପାରିଲି ନାହିଁ- ବସନ୍ତୁ ଆଜ୍ଞା ବସନ୍ତୁ ଏଇ ସୋଫାରେ ବସନ୍ତୁ ପୁରନ୍ଦର ଧାଇଁ ଆସି ସୋଫାକୁ ଝାଡି ଦେଲା) ପୁରନ୍ଦର ! ପୁରନ୍ଦର ! ଏତେବେଳ ଯାକେ ସେମିତି ଛିଡାଟେ ହୋଇ ହୋଇ କଣ ଦେଖୁଚୁ ? ଯେ ପରା ହେଲେ ସେଇ ଝିଅମାନେ ସେଇ ଝିଅଙ୍କ ବାପା ।

ପୁର - ସତରେ ? ଏଇ-ଏଇ ଆଜ୍ଞା ହଉଚନ୍ତି- ନମସ୍କାର ଆଜ୍ଞା ନମସ୍କାର ନମସ୍କାର (ଆଟେନସନ ଭଙ୍ଗୀରେ ଛିଡା ହୋଇ) ଆଟେନ୍-ସନ୍ (ଗୋଡ କଚାଡିବା ସହ) ସା ଆ ଆ... ଲ୍ୟୁଟ... ।

କୀଚକ - Shut up ! ମିଷ୍ଟର ବକ୍ରେଶ୍ୱର ! ତମେ କାଲି ମୋ ଝିଅକୁ ଦେଖିବାକୁ ଗଲ ନାହିଁ କାହିଁକି ?

ବକ୍ରେ - (ଶଙ୍କିତ । କଣ ଉତ୍ତର ଦେବ ଜାଣେ ନାହିଁ) ହେଁଃ ହେଁଃ ହେଁଃ- କାଲି କାଲି ମାନେ କାଲି-କାଲି-କଥାଟା କଣ କି -

ପୁର - ସାର୍ ତ ଏକଦମ୍ ready ଥିଲେ । ମୁଁ ବି ଜାମାପେଣ୍ଟ ସବୁ ଇସ୍ତ୍ରି ଫିସ୍ତ୍ରି ready କରି ଦେଇଥିଲି । ହେଲେ ବାହାରିଲା ବେଳକୁ କଣ ଗୋଟେ ଓଜନ ନା ଆଉ କି ଯନ୍ତ୍ର ଖୋଜା ପଡିଗଲା ଯେ -

ବକ୍ରେ - (ମଝିରେ) ପୁରନ୍ଦର ! ଆଜ୍ଞା ଏତେ ସମୟ ହେଲା ଆସିଲେଣି । ତାଙ୍କ ପାଇଁ ସାଙ୍ଗେ ସାଙ୍ଗେ ମିଠା ଫିଠା ଇତ୍ୟାଦି ଇତ୍ୟାଦି ଆସିବା କଥା ବୋଲି ତୁ ଜାଣିନାହୁଁ ? ବୁଡବକ୍ ! ଯା-ଜଲଦି ଯା ।

ପୁର - (ଡର ବର ହୋଇ) ଆଜ୍ଞା ଆଜ୍ଞା ଯାଉଚି ଯାଉଚି - (ଚାଲିଗଲା) ।

କୀଚକ - No ମିଠା ଫିଠା କାରବାର । ତମେ ଆଗ ମୋତେ କୁହ ତମେ କାଲି ଗଲ ନାହିଁ କାହିଁ କି ? ମହାଶୟଙ୍କୁ ଦେଖିବା ପାଇଁ ବନ୍ଧୁବାନ୍ଧବ ସାଙ୍ଗ ସୁଖ ସମସ୍ତେ ଜମା ହେଇଚନ୍ତି । ଘରଲୋକ ଅନେଇ ବସିଛନ୍ତି । ହେଲେ ମହାଶୟଙ୍କର ଦେଖାନାହିଁ । ମହାଶୟ ଘରେ ବସି କଣ ଗୋଟେ ଯନ୍ତ୍ର ଖୋଜୁଛନ୍ତି । କୁଆଡେ ଚାରିଆଡେ ବୁଲି ବୁଲି କହୁଛନ୍ତି ତାଙ୍କ ଝିଅଟା ମୋଟୀଟେ । ସେଇଥିପାଇଁ ଦେଖିବାକୁ ଗଲି ନାହିଁ । ହେଲେ ମୁଁ ପଚାରୁଚି ମୋଟୀ ଝିଅମାନେ କଣ ବାହା ହଉନାହାନ୍ତି ? ବାହା ହଉନାହାଁନ୍ତି ?

ବକ୍ରେ - ଆଜ୍ଞା ହଉଚନ୍ତି - ହଉଚନ୍ତି -

କୀଚକ - ହଉଚନ୍ତି ତ ତମେ ଏମିତି ଗୋଟେ ପ୍ରହସନ କରିଦେଲ କାହିଁକି ? ସେଇ

ଅପମାନ ପାଇଁ ମୋ ଝିଅ ଆଜି ସକାଳୁ ତା ମାମୁଁ ଘରକୁ ପଳେଇଚି- ଛଅ ମାସ ଆଗରୁ ଆସିବ ନାହିଁ ବୋଲି କହିଯାଇଚି । ତା ମନ ଭାରି ଦୁଃଖ । ତମର ସିଧା କୋର୍ଟ ମାର୍ସାଲ ହେଇଯିବା କଥା । ପଚିଶ କେଜି ଇଟା । ପାଞ୍ଚ କିଲୋମିଟର ଦଉଡ । ବାସ୍ । ଏକାଥରେ ସାବାଡ୍ ! ଓଜନ କେତେ ?

ବକ୍ରେ - ଓଜନ ? ମୋର ଓଜନ !

କୀଚକ - ତମର ନୁହେଁ କଣ ଆଉ ମୋର ଓଜନ ? ମୋ ଓଜନ କେତେ ମୁଁ ଜାଣି ନାହିଁ- ତମକୁ ପଚାରୁଚି ?

ବକ୍ରେ - ମୋ ଓଜନ- ମାନେ ମୋ ଓଜନ- ମୋ ଓଜନ ଏକାନବେ କେଜି ।

କୀଚକ - Shut up !

ବକ୍ରେ - ଦୁଃଖ... ଦୁଃଖ- ଭାରି ଦୁଃଖ- ଭୁଲ୍ ହେଇଗଲା- ମୋ ଓଜନ ଏକତ୍ରିଶ କେଜି- ନାଇଁ... ନାଇଁ... ଏକଚାଳିଶ କେଜି ।

କୀଚକ - କେତେ କେତେ କେତେ ? ଏକ୍‌ଚାଳିଶ କେଜି ? (ହସି ଉଠିଲେ) ହାଃ... ହାଃ... ହାଃ... ମୋ chargeରେ ସବୁଠୁ ଯୋଉ ଛୋଟ ଘୋଡାଛୁଆ ଥିଲା ତାଠୁଁ ବି କମ୍ ? Pity- Pity ମିଷ୍ଟର ବକ୍ରେଶ୍ୱର ! ମୁଁ ତମକୁ Pity କରୁଛି You are less than a ଘୋଡାଛୁଆ । ମୋ ଝିଅର ଓଜନ କେତେ ଜାଣିଚ ?

ବକ୍ରେ - କେତେ ?

କୀଚକ - ବୟାଅଶୀ କେଜି ।

ବକ୍ରେ - ବୟାଅଶୀ କେଜି ? ପ୍ରଭୁ ମହାମେରୁ ! ଆଜ୍ଞା କଣ କଣକର ?

କୀଚକ - Shut up- ତମର ଉଚ୍ଚତା ?

ବକ୍ରେ - ଆଜ୍ଞା ମୋର ଉଚ୍ଚତା - ଛଅ ଫୁଟ ଆଠ ଇଂଚ ।

କୀଚକ - କେତେ ? କେତେ ?

ବକ୍ରେ - ନାଇଁ ନାଇଁ ଆଜ୍ଞା ଭୁଲ ହୋଇଗଲା - ଆଠ ଫୁଟ ଛଅ ଇଂଚ -

କୀଚକ - Shut up !

ବକ୍ରେ - ନାଇଁ ନାଇଁ ଆଜ୍ଞା ପାଞ୍ଚଫୁଟ ଛଅ ଇଞ୍ଚ ।

କୀଚକ - ମାତ୍ର ? ମୋ ଝିଅର ଉଚ୍ଚତା ପାଞ୍ଚ ଫୁଟ ଏଗାର ଇଞ୍ଚ ! ଅଣ୍ଟା ସତଚାଳିଶ ଇଞ୍ଚ । ଜଂଘ ବାରଶ ଇଞ୍ଚ୍ । ପେଣ୍ଡାର ମୋଟେଇ ଷୋହଳ ଇଞ୍ଚ । ବାହୁର ମୋଟେଇ ଅଠର ଇଞ୍ଚ । ଗୋଟେ ମୁଥ ମାରିଦେଲେ ତମର ତତ୍‌କ୍ଷଣାତ୍ ହିସାବ ବିକାଶ ହେଇଯିବ ।

ବକ୍ରେ - ଆଜ୍ଞା ଶୁଣୁଶୁଣୁ ବି ହେଇଗଲାଣି ।

ବକ୍ରେ - (ହସି ଉଠିଲେ) ହାଃ ହାଃ ହାଃ- ଓଜନ କେତେ କହିଲଟି ? ଏକଚାଳିଶ କେଜି ପରା? ହାଃ ହାଃ ହାଃ ମିଷ୍ଟର ବକ୍ରେଶ୍ୱର ! ମୋ ଝିଅର ଓଜନ କେତେ ମନେ ଅଛି ତ ?

ବକ୍ରେ - ଅଛି ଆଜ୍ଞା । ବୟାଅଣୀ କେଜି । ଚିରକାଳକୁ ମନେ ରହିବ ।

କୀଚକ - ତା ସାଙ୍ଗକୁ ବି ମନେ ରଖ ତା ରଙ୍ଗ ବେଶ୍ କଳା ଏବଂ ...

ବକ୍ରେ - ଏବଂ ?

କୀଚକ - ଏବଂ ସେ ଠିକ୍ ସୁନ୍ଦରୀ ତାଲିକାରେ ଯିବ ନାହିଁ ଏବଂ ...

ବକ୍ରେ - ଏବଂ ?

କୀଚକ - ଏବଂ ତୁମେ ତାକୁ ବାହା ହବ ।

ବକ୍ରେ - (ବିବ୍ରତ) ମାନେ ବୟାଅଣୀ କେଜି ଏବଂ ବେଶ୍ କାଳୀ ଓ ଘୋର ମୋଟୀ ଏବଂ ତାକୁ ମୁଁ ...

କୀଚକ - ସେଥିପାଇଁ ଭୟ କରିବାର କିଛି ନାହିଁ । ତମର ଓ ଜନ ବି ବୟାଅଣୀ କେଜି କରାଯିବ । ଦିନକୁ ମୋଟ ଛଅ କେଜି ଦାନା ଖାଇବ । ଦି କେଜି ସୁପ୍ ପିଇବ । ଦି କେଜି ଫଳ ଖାଇବ । ବାସ୍ ଦଶ ମାସରେ ତମେ ବି ବୟାଅଣୀ କେଜି ହେଇଯିବ । ଏଇ ଭଳି ଦାନା ଖୋଇ ଖୋଇ ମୁଁ ତମ ପରି ଚାଳିଶ କେଜିଆ ଘୋଡାବୁଆଙ୍କୁ କେତେ କରିଚି ଜାଣିଚ ? ଅଠାଅଣୀ କେଜି । ତମେ ବି ଖାଇବ । ତମେ ବି ହବ ।

ବକ୍ରେ - ଆଜ୍ଞା ମୁଁ ତ ଘୋଡା ବୁଆ ନୁହେଁ ।

କୀଚକ - ଘୋଡାବୁଆଠୁଁ ବି ହୀନ । ଗୋଟେ ଏକଚାଳିଶ କେଜିଆ ପୁଅ ବାହା ହବ ଗୋଟେ ବୟାଅଣୀ କେଜିଆ ଝିଅକୁ ? ତମେ କେବେ ଦେଖିଚ ?

ବକ୍ରେ - ଦେଖି ନାହିଁ କି ଶୁଣିନାହିଁ ବୋଲି ତ ଆଜ୍ଞା ସାହସ ହଉ ନାହିଁ ।

କୀଚକ - ସେ ସବୁ ବାଜେ ଫନ୍ଦି ଛାଡ । ତମେ ଅଲବତ୍ ବାହାହବ ।

ପୁର - (ପ୍ଲେଟରେ ମିଠା ଧରି ଆସିଛି) ଆଜ୍ଞା ମିଠା ।

କୀଚକ - ଏ ମିଠାରୁ ବି ଦି କେଜି ।

ପୁର - ଏ ମିଠାରୁ ବି ଦି କେଜି ଆଣିବି ? ଆପଣ ଖାଇବେ ?

କୀଚକ - Shut up- ମୁଁ ଖାଇବି ନୁହେଁ । ତମ ବାବୁ ଖାଇବେ ।

ପୁର - ସାର୍ ଆପଣ ଖାଇବେ ? ଏତେ ମିଠା ?

କୀଚକ - ଅଲବତ୍ ଖାଇବେ । ଦଶମାସରେ ବୟାଅଣୀ କେଜି ହେବେ ।

ପୁର - ହଁ ଆଜ୍ଞା ସାର୍ ତ ନିଜେ ବି ଲାଗିଛନ୍ତି । ଆମର ଏଠି ଗୋଟେ ଅପ୍ରେସନ ଏକାଅଣୀ କେଜି ଚାଲୁ ହେଇଚି ଯେ ସେଥିରେ କୁଆଡେ ସାର୍ ଏକାଅଣୀ କେଜି ହେଇଯିବେ । ସାର୍ ଆପଣ ଟିକେ ଆଜ୍ଞାଙ୍କୁ ବୁଝେଇ ଦଉ ନାହାନ୍ତି ଆମ ଅପ୍ରେସନ କଥା ?

ବକ୍ରେ - (ବୁଝେଇବାକୁ ଚେଷ୍ଟା କରି) ଆଜ୍ଞା ଆମର ମାନେ ମାନେ -

କୀଚକ - (ମଝିରେ) ମୋତେ କିଛି ବୁଝେଇବା ଦରକାର ନାହିଁ । ତମେ ଯେତେ କେଜିଆ ଅପ୍ରେସନ କରୁଚ କରୁ ଥା । ତମେ ମୋ ଝିଅକୁ ଅଲବତ୍ ବାହାହବ । ତାକୁ

ଅସୁନ୍ଦରୀ ମୋଟୀପୋଟୀ କହି ବଦନାମ କରୁଚ । ଯୌତୁକ ଲୋଭରେ ଗୋଟାକ ପରେ ଗୋଟେ ଝିଅ ଦେଖି ଚାଲିଚ । ତମେ ଯଦି ଏ ଝିଅ ଦେଖା ଧନ୍ଦା ବନ୍ଦ ନ କର ଆଉ ମୋଟା ହେଇ ମୋ ଝିଅକୁ ବାହା ନ ହୁଅ ତାହେଲେ ମୁଁ ତମ ନାଁରେ ସିଧା ଗୋଟେ ଯୌତୁକ ଆଉ ନିର୍ଯ୍ୟାତନା କେସ୍ ଠୁକିଦେବି । ଛଅ ବର୍ଷ ଜେଲ୍ । ଏକାଥରେ ସାବାଡ୍ ।

ପୁର - ଆଜ୍ଞା ଆମ ସାର୍ ତ ଜମା ...

କୀଚକ - (ମଝିରେ) ତମ ନାଁରେ ବି ଠୁକି ଦେବି । ଶୁଣି ଆଉ ମାଡାଲ୍ ଦି' ଜଣଯାକ ଏକାଠି ବନ୍ଧା ହେଇ ଯାଇ ଜେଲ୍‌ଖାନାରେ କୁନ୍ଦ । ଖାଇବ (ପାଟିକରି) Right ? ଯାଉଚି । (ପାଟି କରି) ଆଟେନ୍...ସନ୍ ... ସାଲ୍ୟୁଟ୍ ... (ବକ୍ରେଶ୍ବର ଓ ପୁରନ୍ଦର ଆଟେନ୍‌ସନ୍ ଭଙ୍ଗୀରେ ଛିଡ଼ା ହୋଇ ସାଲ୍ୟୁଟ କଲେ । କୀଚକେଶ୍ବର ଟେବୁଲ୍‌ରେ ଜୋର୍‌ରେ ବାଡ଼ି ଠୁକେଇ ଚାଲିଗଲେ ।)

ପୁର - (ଗଲାପରେ) ଓହୋ ! କି କଡା... କଡା କଥାଲୋ ବାବା ! ଡରରେ ତ ମୋ ଦିହରୁ ଦି କେଜି ଝାଳ ବୋହିଗଲାଣି । ହେଲେ ସାର୍ ସେ କଣ କହିଲେ ଆପଣ କୁଆଡେ ଚାରିଆଡେ ବୁଲି ବୁଲି ତାଙ୍କ ଝିଅ କାଳୀ ଆଉ ମୋଟୀ ବୋଲି ବଦ୍‌ନାମ କରୁଚନ୍ତି । ସତ ?

ବକ୍ରେ - ପୁରନ୍ଦର ! ମୁଁ ଏଥର ଦିନକୁ ସତର କେଜି ଦାନା ଖାଇବି । ଅଠର କେଜି ହାଣ୍ଡିଆ ପିଇବି । ଉଣେଇଶ କଲି ଗଞ୍ଜେଇ ଟାଣିବି । ତାପରେ ମଦ୍ର ଦେଶକୁ ଯାଇ ସେ ଭଣ୍ଡ କୀଚକାସୁରକୁ ଗୋଟେ ବୟାଅଣୀ କେଜିଆ ମୁଥରେ ଧରାଶାୟୀ କରିବି । ତା ଘୋର କାଳୀ ଆଉ ମୋଟୀ ଝିଅକୁ ହରଣ କରି ଆଣି ତାର ହିସାବନିକାଶ କରିଦେବି । ବାସ୍ ! ଯାନେ ଦେ !

ପୁର - (ହସ ସମ୍ଭାଳି ନ ପାରି ଜୋର୍‌ରେ ହସିଲା) ।

ବକ୍ରେ - ପୁରନ୍ଦର ! ସାଙ୍ଗେ ସାଙ୍ଗେ ହସ ବନ୍ଦ କର । ନ ହେଲେ ମୁଁ ତୋର ବି ହିସାବନିକାଶ କରିଦେବି । ଦୁଃଖରେ ମୋ ହୃଦ ଫାଟି କେଜାଣି କେତେ ଖଣ୍ଡ ହେଇ ସାରିଲାଣି । ୟାର ଚାଲିଛି ଥଟ୍ଟା ପରିହାସ- ହସ କୁର୍କୁଟି ! (ପୁରନ୍ଦର ତଥାପି ହସୁଛି) ପୁରନ୍ଦର !

ପୁର - (ହସ କମେଇ) ଗଲି ସାର୍- (ଚାଲିଗଲା) ।

ବକ୍ରେ - (ବାହାରେ ଠକ୍ ଠକ୍ ଶବ୍ଦ) କିଏ ?

ଗଣେ - (ବାହାରେ) ଆଜ୍ଞା ମୁଁ ।

ବକ୍ରେ - ତମେ ଯିଏ ହୁଅ ପଛେ ସାଙ୍ଗେ ସାଙ୍ଗେ ପଳା । ନ ହେଲେ ମୁଁ ତୁମର ବି ହିସାବ ନିକାଶ କରିଦେବି ।

ଗଣେଶ - (ବାହାରେ) ହିଃ... ହିଃ... ହିଃ- ମୁଁ ପରା ଆପଣଙ୍କର ହିସାବ ନିକାଶ କରିବାକୁ ଆସିଛି - ଗଣେଶ୍ବର । ଜଲେଶ୍ବର ।

ବକ୍ରେ - ଯା ଭିତରେ ପଣେ ଈଶ୍ୱର ଠେଙ୍ଗିଣୀ ଖେଳ କରି ଗଲେଣି । ତମେ ଦିଟା ଆଉ ଆସିବା ଦରକାର ନାହିଁ । ନ ହେଲେ ମୁଁ ତମ ଉପରେ ଠେଙ୍ଗିଣୀ ଖେଳ କରିଦେବି ।

ଗଣେଶ - (ଭିତରକୁ ଆସିଛି) ହେଁ ହେଁ ହେଁ- ଆମେ ଦି'ଜଣ ନୋହୁଁ ସାର୍ ଜଣେ । ଗଣେଶ୍ୱର । ସାକିନ୍ ଜଳେଶ୍ୱର । ଜିଲେ- ବାଲେଶ୍ୱର । ହେଁ ହେଁ ହେଁ - ଆପଣଙ୍କ ଲୀଳାଖେଳା ଚାଲିଥାଉ । ମୁଁ ଖାଲି ଦି'ଚାରିପଦ କଥା ହେଇ ପଳେଇବି । ଏଇଠି ଟିକେ ବସିବି ? (ବସିଗଲା) ହେଁ ହେଁ ହେଁ- ସାର୍ ତ ଖାଲି ରାଗ ରାଗ ହଉଚନ୍ତି । ହେବେ ତ । ବୟସ ହେଇଗଲା । ବାହାଘର ଫାହାଘର କିଛି ହେଲା ନାହିଁ । ଓଥରା ହେଇ ବସିଛନ୍ତି । ବାହାତିଥିକି ଚାହିଁଛନ୍ତି । ହେବେ ନାହିଁ ? ସାର୍ କଣ କିଛି ସୁବିଧା ହେଲାଣି ?

ବକ୍ରେ - ହେଲାଣି !

ଗଣେ - ହେଲାଣି ? କାହାକୁ ?

ବକ୍ରେ - ଅପାଣ୍ଡବା ରାଜ୍ୟରେ କୀଚକେଶ୍ୱର ନାମକ ଜଣେ ମହାପ୍ରତାପୀ ରାଜା ଅଛନ୍ତି ବୋଲି ଜାଣଚି ? ତାଙ୍କରି ଝିଅକୁ । ଘୋର ସୁନ୍ଦର ସେ କାଳୀ । ଘୋର ସୁନ୍ଦର ସେ ମୋଟୀ । ଓଁ ହ୍ରୀଂ କ୍ଲୀଂ ଫଟ ଫଟି । ନାଁଟି ହଉଚି ରଙ୍ଗବଟୀ । ଇଲେକ୍ଟ୍ରି ନ ଥିଲେ ମହମବଟୀ । କ୍ଷୀତିକୁ ହେଲାଣି ଜବର ଭୀତି । ମଧ୍ୟସ୍ଥି ହେଲେ ରାଣୀ ମା କୁଣ୍ଡି । ମନ ମୋର ହୁଏ କୁଣ୍ଡୁରୁକୁଣ୍ଡି - ମନ ମୋର ହୁଏ କୁଣ୍ଡୁରୁକୁଣ୍ଡି -

ଗଣେଶ - ଆଜ୍ଞା ମୋର କଣ କିଛି ଭୁଲ ହେଇଗଲା କି ? ଆପଣଙ୍କ ନାଁ ବକ୍ରେଶ୍ୱର ଦାସ ତ ?

ବକ୍ରେ - ଆହୁରି ବି ନାଁ ଅଛି । ଅଷ୍ଟୋତ୍ତର ଶତ ନାମ । ମନେ ରଖିଥାନ୍ତୁ । ବିପଦ ଆପଦରେ ନାମ ଜପ କଲେ ରକ୍ଷା ପାଇଯିବେ । କହିବି ଶୁଣିବେ !

ଗଣେଶ - ହିଃ ହିଃ ହିଃ - ହୁଏ - ହୁଏ - ହୁଏ - ସେମିତି ହୁଏ । ଦେହ ଅତୀବ କ୍ଷୀଣ ହେଲେ ମୁଣ୍ଡ ବି ଗୋଲମାଲିଆ ଧରେ । ଗଜିମୁଣ୍ଡବାବୁ ଠିକ୍ କହୁଥିଲେ । ହଉ କିଛି ଚିନ୍ତା ନାହିଁ । ସବୁ ଠିକ୍ ହେଇଯିବ । ଭଲ ପ୍ରସ୍ତାବ ଅଛି ।

ବକ୍ରେ - କେତେ କେଜି ?

ଗଣେଶ - (ବୁଝି ପାରି ନାହିଁ) ଆଜ୍ଞା ?

ବକ୍ରେ- ମୁଁ ପଚାରୁଚି କେତେ କେଜି ?

ଗଣେଶ - (ହଠାତ୍ ବୁଝି ପାରିଲା । ହସିହସି) ଓହୋ... ହୋ... ହୋ... । ବୁଝିଲି... ବୁଝିଲି- ବାବୁଙ୍କର ଓଜନ ପଇଁତ୍ରିଶ ଚାଳିଶ କେଜି ହବ ତ କନ୍ୟାପାତ୍ରୀର ଓଜନ କାଳେ ସତୁରୀ ଅଶୀ କେଜି ହେଇଯାଏ ସେଇଥିପାଇଁ ବାବୁଙ୍କର ଡର । ସତୁରୀ ଅଶୀ କେଜି ପାଖରେ ପଇଁତ୍ରିଶ ଚାଳିଶ କେଜି ମାତାପୁତ୍ର ପରି କି କନିଷ୍ଠ ଭ୍ରାତା ଜ୍ୟେଷ୍ଠା ଭଗିନୀ ପରି ଦିଶିବେ ତ ।

ବକ୍ରେ - (ତାଗିଦ୍ ସ୍ୱରରେ) ମିଷ୍ଟର ଗଣେଶ୍ୱର !

ଗଣେଶ - (ଅଳ୍ପ ଅଳ୍ପ ହସି) କିଛି ଚିନ୍ତା ନାହିଁ ସାର୍ ଆପଣଙ୍କ ପାଇଁ ବି ବଢ଼ିଆଁ ପ୍ରସ୍ତାବ ଅଛି । ପଇଁତ୍ରିଶ ଛତିଶ କେଜି ।

ବକ୍ରେ - ଛତିଶ କେଜିଆ ମୁଥରେ ବି ବୁଦ୍ଧି ବଣା ହେଇ ଯାଇପାରେ । ପଳାନ୍ତୁ ।

ଗଣେଶ - ଖାଲି ତ ବାଉଳା ଚାଉଳା କଥା- ଖାଲି ତ ବାଉଳା ଚାଉଳା କଥା । ଗଳିମୁଣ୍ଡ ବାବୁ ତା ହେଲେ ଠିକ୍ କହୁଥିଲେ । ହଅଅ- ଚାଳିଶ କେଜିଆ ମୁଣ୍ଡରେ କେତେ ବା ଆଉ ସମ୍ଭାଳିବେ ?

ବକ୍ରେ - ଯିବେ ନା ଠେଙ୍ଗିଣୀ ମଗେଇବି ?

ଗଣେଶ - ହଅଅ ବାହା ଯଦି ହେବେ ନାହିଁ ତ ସିଧା ସିଧା କହି ଦେବେ । ଏତେ ମୁଥ ଫୁଥ ଠେଙ୍ଗିଣୀ ମେଙ୍ଗିଣୀ କଥା କାହିଁକି ଚାଲିଚି ? ଅତି ଉତ୍ତମ ସ୍ଥାନରେ ବାହା ହେଇ ଥାନ୍ତେ । ଯାନି ଯୌତୁକ ପାଇଥାନ୍ତେ । ଆପଣଙ୍କ ଓଥରା ଦୋଷ କଟିଥାନ୍ତା । ନହେଲେ ନ କଟୁ । ସେମିତି ବସିଥାନ୍ତୁ ।

ବକ୍ରେ - ପୁରନ୍ଦର ! ମୋ ଠେଙ୍ଗିଣୀ ।

ଗଣେଶ - ହଁ ହୋ ଯାଉଚି । ହେଲେ ପଚିଶ କେଜିଆ ପାତ୍ରୀ ଦରକାର ତ ସେମିତିକା ପାତ୍ରୀ ମିଳିବେ ଇସ୍କୁଲରେ । ବାଲ୍ୟ ବିବାହ । ଛଅ ବର୍ଷ ଜେଲ୍ । କଥାଟା ହେଇ ଥାଏ ଯେମିତି ।

ବକ୍ରେ - ପୁରନ୍ଦର ! ଡେରି ହେଉଚି କାହିଁକି ?

ଗଣେଶ - (ଉଠି ପଡି) ହଅଅ ! ପୁରନ୍ଦର ପୁରନ୍ଦର ! ବାଳୁତ ପଣ ଯାଇ ନାହିଁ । ଓଜନ ବୋଇଲେ ପଇଁତିରିଶ କେଜି । ବାଡି ଖଣ୍ଡେ ତକୁ ଉଠେଇବାକୁ ବଳ ନଥିବ । ଧମକ ଦିଆ ଚାଲିଚି ! ଠେଙ୍ଗିଣୀ !

(ପୁରନ୍ଦର ଠେଙ୍ଗିଣୀ ଧରି ଧାଇଁ ଆସିଲା । ଗଣେଶ୍ୱର ଧାଇଁ ପଳେଇଯିବାର ଚେଷ୍ଟା । ଗୋଡ଼ାଗୋଡ଼ି ହେବା ଭିତରେ ଗଣେଶ୍ୱରକୁ ଟାଣି ଧରିଲେ ସୁଦ୍ଧା ସେ ଖସି ପଳାଇଲା)

ପୁର - ସାର୍ ! ଠେଙ୍ଗିଣୀ -

ବ୍ରକ୍ରେ - (ବିରକ୍ତି ସହ) ଚୁପ୍ ବେ -

## ତୃତୀୟ

(ପ୍ରାୟ ଦୁଇମାସ ପରେ । ରାତି ଆଠଟା । ଜଣେ ଦୂର ସଂପର୍କ ଆତ୍ମୀୟଙ୍କ ଝିଅର ବାହାଘର । ଆତ୍ମୀୟ ଧନବାନ । ସାଜସଜ୍ଜାର ଆଡମ୍ବର ତଦନୁଯାୟୀ ଉଚ୍ଚକୋଟୀର । ଚାରିଆଡେ ନିମନ୍ତ୍ରିତ ଅତିଥିମାନଙ୍କର ଚଳପ୍ରଚଳ ଚାଲିଛି ଓ କଳରବ ଶୁଭୁଛି । ତା ସହ ଶାସ୍ତ୍ରୀୟ ବାଦ୍ୟ ସଂଗୀତର ସ୍ୱର ମଧ୍ୟ । ସାମିୟାନା ତଳେ କିଞ୍ଚିତ ଏକାନ୍ତ କୋଣରେ ଦୁଇଟି

ଚେୟାରରେ ବସିଛନ୍ତି ବକ୍ରେଶ୍ୱର ଓ ନିତ୍ୟାନନ୍ଦ । ଉଭୟେ ନିମନ୍ତ୍ରିତ) ।

ନିତ୍ୟା - (ଉଚ୍ଚସ୍ୱରରେ ହସୁଥିଲେ) ହାଃ... ହାଃ... ହାଃ- ବୟାଅଣୀ ସଂଖ୍ୟାଟା ଶୁଣିଦେଲେ ମହାଶୟଙ୍କର କେମିତି ଟିକେ ବିଚଳିତ ଭାବ ହେଇଯାଉଚି ଦେଖୁଚି । କାହିଁକି? ବୟାଅଣୀ ସଂଖ୍ୟାଟା ତ ସେମିତି କିଛି ଗୋଟେ ଭୟାନକ ବସ୍ତୁ ନୁହେଁ ।

ବକ୍ରେ - ହେଁଃ ହେଃ ହେଃ- ନାଇଁ... ନାଇଁ- ସେମିତି କିଛି ନୁହେଁ ଯେ...

ନିତ୍ୟା - (ହଠାତ୍ ଆଶ୍ଚର୍ଯ୍ୟ ପ୍ରକାଶ କରି) ଆରେ ! କି ବିଚିତ୍ର ସଂଯୋଗ ! ମହାଶୟ ! ଆପଣ ଯୋଉ ଚେୟାର୍‌ରେ ବସିଚନ୍ତି ତାର ସଂଖ୍ୟା କେତେ ଜାଣନ୍ତି ? ବୟାଅଣୀ ।

ବକ୍ରେ - (ହଠାତ୍ ଚମକି ଉଠି ପଡି ଚେୟାର ପଛକୁ ଯାଇ ନମ୍ବର ଦେଖିଲା) ।

ନିତ୍ୟା - (ହସି ଉଠିଲେ) ହାଃ... ହାଃ... ହାଃ...

ବକ୍ରେ - (ହସ ଭିତରେ ଆଶ୍ୱସ୍ତ ସ୍ୱରରେ) ନାଇଁ... ସତେଇଶ । (ତାପରେ ନିତ୍ୟାନନ୍ଦଙ୍କ ସହ ମିଶି ଅଟ୍ଟ ଅଟ୍ଟ ହସିଲା) ।

ନିତ୍ୟା - (ହସି ହସି) ଆପଣ ସତରେ ଭୟ କରିଗଲେ ନା କଣ ? ହାଃ... ହାଃ... ହାଃ- ବସନ୍ତୁ- ବସନ୍ତୁ- ସେଇ ଚେୟାର୍‌ରେଇ ବସନ୍ତୁ । ତାର ସଂଖ୍ୟା ତ ମାତ୍ର ସତେଇଶ । ଆଉ ଭୟ କଣ ?

ବକ୍ରେ - (କିଛିଟା ଅନାବଶ୍ୟକ ଭାବେ ହସିଲା ଓ ଦ୍ୱିଧାର ସହ ସେଇ ଚେୟାର୍‌ରେ ବସିଲା) ହାଃ ହାଃ ହାଃ...

ନିତ୍ୟା - ଅବଶ୍ୟ ବୟାଅଣୀ ସଂଖ୍ୟାକୁ ଭୟ କରିବାର କିଛି କାରଣ ବି ଅଛି । ସଂଖ୍ୟାଟା ଗୋଟେ ଭାରି ଜବରଦସ୍ତ ସଂଖ୍ୟା । ଦୁଇ ଛଡା ଆଉ କୌଣସି ସଂଖ୍ୟାକୁ ସେ ଟିକେ ହେଲେ ଖାତିର କରେ ନାହିଁ । କାହିଁକି ଜାଣନ୍ତି ? କେବଳ ଦୁଇହିଁ ତାକୁ ଭାଗ ଭାଗ କରିପାରେ । ଆଉ କେହି ତାର କିଛି କରି ପାରନ୍ତି ନାହିଁ । ଆପଣ ଯଦି ତାକୁ ଥରେ ଅଧା କରି ଦେଲେ ନା ତାହେଲେ ସେ ହବ ଏକଚାଳିଶ । ଆଉ ଆପଣ ସେ ସଂଖ୍ୟାକୁ ନେଇ କିଛି କରିପାରିବେ ନାହିଁ । ସେ ଜମା କାହାରି କଥା ଶୁଣିବ ନାହିଁ । ଷଣ୍ଢ ଟେକି ଛାଡି ଫୁଲେଇ ଆଖିକୁ ତରାଟି ମରାଟି ଚାହିଁ ଛିଡା ହେଇଥିବ । ଆପଣ ନିରୁପାୟ ହେଇ ଚାହିଁ ରହିଥିବେ ।

ବକ୍ରେ - ହଁ ଆଜ୍ଞା ମୁଁ ବି ତ ନିରୁପାୟ ହେଇ ଚାହିଁ ରହିଚି । ଏକଚାଳିଶରେ ଏକ-ଚାଳିଶଟେ ମିଶେଇଦେଲେ ବୟାଅଣୀ ହବ । ହେଲେ ମୁଁ ଯାହା ଦେଖୁଚି ସେତିକି ମିଶେଇବାକୁ ଲାଗିଯିବ କେଜାଣି କେତେ ବର୍ଷ ।

ନିତ୍ୟା - (ଆଶ୍ଚର୍ଯ୍ୟ) ଏକଚାଳିଶରେ ଏକଚାଳିଶଟେ ମିଶେଇବାକୁ ଲାଗିଯିବ କେଜାଣି କେତେ ବର୍ଷ ?

ବଙ୍କେ - ଆଜ୍ଞା ଲାଗିଯିବ । ମୁଁ ପରା ଦି' ମାସ ହେଲା ମିଶେଇ ମିଶେଇ...

ନିତ୍ୟା - ମାନେ ଆପଣ ଦି ମାସ ହେଲା ଏକଚାଳିଶରେ ଏକଚାଳିଶ ମିଶଉଚନ୍ତି- ତଥାପି...

ବଙ୍କେ - ତଥାପି ବୟାଅଶୀ ହବା ଦୂରେ ଥାଉ ବୟାଳିଶ ବି ହଉ ନାହିଁ ।

ନିତ୍ୟା - (ବୁଝି ନପାରି ରହି ରହି) ଆପଣ ଦୁଇମାସ ହେଲା ଏକଚାଳିଶରେ ଏକଚାଳିଶ ମିଶଉଚନ୍ତି - ତଥାପି ଦିଟାଯାକ ମିଶି ବୟାଅଶୀ ହବା ଦୂରେ ଥାଉ ବୟାଳିଶ ବି ହଉ ନାହିଁ - ଏ ମିଶାମିଶି କାମଟା ସରିବାକୁ ଆହୁରି କେଜାଣି କେତେ ବର୍ଷ ଲାଗିଯାଇପାରେ- ମହାଶୟ ! ଏ Whole କଥାଗୁଡ଼ା କେମିତି ଗୋଲମାଲିଆ ଗୋଲମାଲିଆ ଧରୁଚି ।

ବଙ୍କେ - ହଁ ଆଜ୍ଞା ଲାଗୁଥିବ । କଥାଟା ଭାରି ଗୋଲ୍‌ମାଲିଆ ଗୋଲ୍‌ମାଲିଆ ଧରିଗଲାଣି ।

ନିତ୍ୟା - ଆଚ୍ଛା ମହାଶୟ ଆପଣ ଏଇ କିଛି ସମୟ ପୂର୍ବରୁ କଣ ଗୋଟେ କେଜି କଥା କହୁଥିଲେ ନାଁ ? ଏ କେଜି କଥାଟି ପୁଣି କଣ ?

ବଙ୍କେ - (କିଛି ଉତ୍ତର ନାହିଁ । ବୃଥା ହସ ହସ) ହେଁଃ...ହେଁଃ...ହେଁଃ...

ନିତ୍ୟା - କେଜି କହିଲେ ଲୋକେ ଅବଶ୍ୟ କିଲୋଗ୍ରାମ ବୋଲି ବୁଝନ୍ତି । କିନ୍ତୁ ଆଜିକାର ଏ ସୁନ୍ଦର ଜହ୍ନରାତି ଏ ସୁନ୍ଦର ବାହାଘର ସଭାର ଆଡମ୍ବର ପ୍ରଜାପତି ପରି ଚାରି ଆଡେ ଘୁରି ବୁଲୁଥିବା ସୁନ୍ଦର ଯୁବକ ଯୁବତୀଦଳ- ଏମାନଙ୍କ ଭିତରେ ଆପଣଙ୍କ ପରି ଜଣେ ସୁନ୍ଦର ଶିକ୍ଷିତ ଯୁବକ ନିଶ୍ଚୟ କିଲୋଗ୍ରାମ କଥା ଚିନ୍ତା କରୁନାହାନ୍ତି । ତେଣୁ କେଜି ଜଣେ ସୁନ୍ଦରୀ ଯୁବତୀଙ୍କର ନାଁ ହୋଇପାରେ କି ? (ହସି ଉଠିଲେ) ହାଃ...ହାଃ...ହାଃ... । ନାଁଟି ଭାରି ସୁନ୍ଦର କିନ୍ତୁ । କେଜି ତେଜି ବିଜି ରୋଜି ଲିଜି - ଚମତକାର ! ନାଁଗୁଡାକୁ ଖାଲି ପାଟିରେ ପଇଟେଇ ନେଲେଇ ସଂଗୀତ ହୋଇଯାଉଚି । (ସ୍ୱର କମେଇ ହସ ହସ ସ୍ୱରରେ) କିନ୍ତୁ ମହାଶୟ ! କେଜି ନାମକ ସେ Beautiful young lady କଣ ଆପଣଙ୍କର ...

ବଙ୍କେ - ହେଁଃ ହେଁଃ ହେଁଃ... ନାଇଁ ନାଇଁ ତା ନୁହେଁ ଯେ-ତା ନୁହେଁ ଯେ-

ନିତ୍ୟା - (ହସି ହସି) ହାଃ ହାଃ ହାଃ... ଦେଖିଲେ ତ କେମିତି ଜାଣିଗଲି । ଅବଶ୍ୟ ପ୍ରେମଟା ଯେତିକି ଚୋରା ଚୋରା ହୁଏ ସେଥିରୁ ସେତିକି ସେତିକି ମଜା ଉଠେ । ମୁଁ ବି ନିଜେ କିଛି କିଛି ଚୋରା ପ୍ରେମ କରୁଥିଲି ତ-ଆପଣଙ୍କ ସାଙ୍ଗରେ ଦିଚାରିପଦ କଥା ହେଇଗଲି । ସାଙ୍ଗେ ସାଙ୍ଗେ କଥାଟା ଠଉରେଇ ନେଲି । (ହସିଲେ) ହାଃ...ହାଃ...ହାଃ... ମୋ ପ୍ରେମିକା ଯେ କି ପରେ ମୋର ସ୍ତ୍ରୀ ହେଲେ ସେ ମୋତେ କଣ କହୁଚନ୍ତି ଜାଣନ୍ତି ? କହୁଚନ୍ତି ନିତ୍ୟ ତମେ ମୋତେ ପ୍ରେମ କଲାବେଳେ ଟୋକା ଥିଲ-ତଥାପି ଚୋର ପରି ଲୁଚି ଲୁଚି

ବୁଲୁଥିଲ । ଏବେ ବୟସ ହେଲା ପରେ ପ୍ରେମ କଲାବେଳେ ଡକାୟତ ପରି ଏମିତି ଜବରଦସ୍ତ ବାହା ପିତୁଚ କେମିତି ? (ହସିଲେ) ହାଃ...ହାଃ...ହାଃ... ହେଲେ ଏତେବେଳଯାକେ ମହାଶୟଙ୍କର ଶୁଭନାମଟି ତ ଜାଣିପାରିଲି ନାହିଁ ।

ବକ୍ରେ - ହେଁଃ ହେଁଃ ହେଁଃ... ମୋ ନାଁ ? ମୋ ନାଁ ହଉଚି- ମୋ ନାଁ ହଉଚି-

ନିତ୍ୟା - ହେଇଥିବ - ହେଇଥିବ - ନିଶ୍ଚେଭାରି ସୁନ୍ଦର ନାଁଟିଏ ହେଇଥିବ । ଆପଣଙ୍କ ପରି ଜଣେ ସୁନ୍ଦର ଉଚ୍ଚଶିକ୍ଷିତ ଗୌରାଙ୍ଗ ଯୁବକଙ୍କର ନାଁ କଣ କେବେ ଅସୁନ୍ଦର ହେଇ ପାରେ ? ଆପଣଙ୍କ ନାଁ ହୁଏ ତ ହେଇଥିବ ଅନିନ୍ଦ୍ୟ କିମ୍ୱା ସୁଦୀପ୍ତ କିମ୍ୱା ସୁମନ୍ତ କିମ୍ୱା ଶ୍ରେୟାଂଶୁ । ନୁହେଁ କି ? ସେ କେଜି ରୋଜି ଡେଜି ଆଦି ସୁନ୍ଦରୀ ଝିଅମାନେ ଖାଲି ଏଇ ଭଳି ସୁନ୍ଦର ନାଁଟିଏ ଶୁଣି ଦେଲେ ତ ଆପଣଙ୍କ ପ୍ରେମରେ ପଡିଯିବେ । ତଥାପି ମହାଶୟଙ୍କ ନାଁଟା ଜାଣିଲେ ଭାରି ଆନନ୍ଦ ହବ । ମୋ ନାଁଟା ତ ଆପଣଙ୍କୁ ଆଗରୁ କହିଚି- ନିତ୍ୟାନନ୍ଦ ବରିସାଲ । ଭାରି ପୁରୁଣା କାଳିଆ ନାଁ- ଯେମିତି କପିଳ ପର୍ଶୁରାମ ମାର୍କଣ୍ଡ କୀର୍ତ୍ତନ ଧନେଶ୍ୱର ମହେଶ୍ୱର-ହାଃ ହାଃ ହାଃ । ଅବଶ୍ୟ କଣ ବା ଗୋଟେ ଥାଏ କାହାରି ନାଁରେ ? ଆପଣଙ୍କ ନାଁଟା ଯଦି ଅଲେଖ ବା ଚିନ୍ତାମଣି ବା ଅଗଣି ବା ସ୍ୱପ୍ନେଶ୍ୱର ହେଇଥାଏ ତାହେଲେ ବି କଣ ବା ଫରକ ପଡିବ ସେଥିରେ ? ଅସଲ କଥାଟା ହେଲା ଆପଣଙ୍କ ନାଁଟା ଯାହା ହଉ ନା କାହିଁକି ଆପଣ ଜଣେ ଭାରି ସୁନ୍ଦର ସୁପୁରୁଷ ଯୁବକ ଆଉ କେଜି ପରି ସୁନ୍ଦର ନାଁ ଥିବା ଗୋଟିଏ ଭାରି ସୁନ୍ଦରୀ ଯୁବତୀର ପ୍ରେମିକ । ନୁହେଁ କି ? ହାଃ...ହାଃ...ହାଃ... । (ଖୁସି ଖୁସି ସ୍ୱରରେ କବିତା ଆବୃତ୍ତି)

The night is still very young
Oh my love !
I will sing thou
a song of kisses and embraces long.
But I will come to thee
To thy arms.
When
And only when they are
fully warm and strong
To be crushed and mauled and wrung
For long...for long... and for long
For to you
And to you only I belong.

ନିତ୍ୟା - (ହସି ଉଠିଲେ) ହାଃ... ହାଃ... ହାଃ- (ବକ୍ରେଶ୍ୱର ମଧ୍ୟ) ।

ସୋମୁ - (ଆସିଛି । ନିତ୍ୟାନନ୍ଦଙ୍କୁ) କ୍ଷମା କରିବେ ।

ନିତ୍ୟା - ମୋତେ ପଚାରୁଚଚି ? ମୋ ନାଁ ନିତ୍ୟାନନ୍ଦ- ନିତ୍ୟାନନ୍ଦ ବରିସାଲ । ଭାରି

ପୁରୁଣା କାଳିଆ ନାଁ ଅବଶ୍ୟ- (ହସିଲେ)- କିନ୍ତୁ ମୋର ଏ ବନ୍ଧୁଙ୍କ ନାଁ ଏକଦମ୍ ଆଧୁନିକ- କଣଟି ଆପଣଙ୍କ ନାଁଟା ? ମିଷ୍ଟର ସୁଦୀପ୍ତ । ସୁଦୀପ୍ତ ସେନାପତି । ହାଃ... ହାଃ.... ହାଃ...

ସୋମୁ - ଭାରି ଖୁସି ଲାଗିଲା ଆପଣଙ୍କୁ ଜାଣି । ସଂଯୋଗବଶତଃ ଆପଣଙ୍କର ଏ ବନ୍ଧୁ ମୋର ବି ବନ୍ଧୁ । ତା ସାଙ୍ଗରେ ଟିକେ କଥା ଅଛି ତ ସେଇଥିପାଇଁ ଆସିଚି । (ବକ୍ରେଶ୍ୱରଙ୍କୁ) ବକୃ !

ନିତ୍ୟା - କଣ କହିଲେ ? କଣ କହିଲେ ? ବକୃ ! ଏ ମହାଶୟଙ୍କ ନାଁ କଣ ବକୃ ? ମୋର ତା ହେଲେ ଭୁଲ୍ ହେଇଗଲା ନା କଣ ?

ସୋମୁ - ନାଇଁ... ନାଇଁ... ଆଜ୍ଞା କିଛି ଭୁଲ୍ ହେଇନାହିଁ । ତା ନାଁ ସୁଦୀପ୍ତ ବରିସାଲ କ୍ଷମା କରିବେ ସୁଦୀପ୍ତ ସେନାପତି ଯେ ମୋର ପିଲାଦିନର ସାଙ୍ଗ ତ ତାକୁ ଆମେ ଥଟାରେ ତାକୁଁ ବକୃ ବୋଲି । ନା କଣ ରେ ସୁଦୀପ୍ତ ?

ନିତ୍ୟା - ଭଲ ନାଁ ସୁଦୀପ୍ତ ଅଥଚ ଡାକ ନାଁ ବକୃ - ବକୃ ! ଭଲ ନାଁ ....

ସୋମୁ - (ପୂରଣ କଲାପରି) ସୁଦୀପ୍ତ ଡ଼ାକ ନାଁ ବକୃ -

ନିତ୍ୟା - ହଉ ଆପଣ ବସି କଥାବାର୍ତ୍ତା ହୁଅନ୍ତୁ - ମୁଁ ଯାଉଚି - (କିଛିଟା ସ୍ୱଗତ ଭାବେ) ଭଲ ନାଁ ସୁଦୀପ୍ତ ଡ଼ାକ ନାଁ ବକୃ - ଭଲ ନାଁ ସୁଦୀପ୍ତ -

ସୋମୁ - - ଡ଼ାକ ନାଁ ବକୃ ।

ନିତ୍ୟା - ଡ଼ାକ ନାଁ ବକୃ । ଭଲ ନାଁ ସୁଦୀପ୍ତ ଡ଼ାକ ନାଁ ବକୃ । ଭଲ ନାଁ - (କହି କହି ଚାଲିଗଲା)

ସୋମୁ - ବକୃ ! ତୋର ଏ ସୁଦୀପ୍ତ ସେନାପତି ନାଁଟା କେବେଠୁ ହେଲା କିବେ ?

ବକ୍ରେ - ମୋ ନାଁ କାହିଁକି ସୁଦୀପ୍ତ ସେନାପତି ହବ ହୋ ?

ସୋମୁ - ତା ହେଲେ ସେ ବାବୁ ଯେ କହିଲେ- ତୁ ତାଙ୍କୁ ସେଇ ନାଁ କହିଥିଲୁ ? ହଉ ଛାଡ ସେ କଥା । ତୁ ଚାଲ୍ ଝିଅ ଦେଖି ଆସିବୁ । କନ୍ୟା ପାଖରେ ବସିଛି । ଭାରି ସୁନ୍ଦର ଝିଅ । ତୁ ଯେମିତିକା ସୁନ୍ଦରୀ ଗୋରୀ ଆଉ ପତଳୀ ଝିଅ ଖୋଜୁଥିଲୁ ସେମିତିକା । ଆ- ଜଲ୍‌ଦି । ସେ ଝିଅ ଯଦି ସେଠୁ ଉଠି ଆଉ କୁଆଡେ ଚାଲିଗଲା ତାହେଲେ ତାକୁ ପୁଣି ଠାବ କରିବା କାଠିକର ପାଠ ହବ । ଆ !

ବକ୍ରେ - ଯିବି ? ମାନେ ମୁଁ ସେଇଠିକି ଯିବି ?

ସୋମୁ - କାହିଁକି ? କିଛି ଅସୁବିଧା ଅଛି ?

ବକ୍ରେ - ନାଇଁ... ନାଇଁ କିଛି ଅସୁବିଧା ନାଇଁ ଯେ - ମାନେ କଥାଟା କଣ କି ସେଠି ଦଳେ ଝିଅ ବସିଥିବେ ତ -

ସୋମୁ - ବାହାଘର କଥା । ବସିବେ ନାହିଁ ? ବସିଚନ୍ତି ତ ।

ବକ୍ରେ - ବସିଚନ୍ତି ତ ?

ସୋମୁ - କଣ ଡର ମାଡିଗଲା ।

ବକ୍ରେ - ହେଁଃ... ହେଁଃ.... ହେଁଃ- ନାଇଁ ଯେ ମାନେ ସେଠି ଅନେକ ଲୋକବାକ ଝିଅ ପିଅ ଇତ୍ୟାଦି ଇତ୍ୟାଦି ଥିବେ - ତାଙ୍କ ଭିତରେ ଛିଡ଼ା ହେଇ କଥାବାର୍ତ୍ତା ହବାଟା- ସେଇଥିପାଇଁ ମୁଁ କଣ କହୁଥିଲି କି ଯଦି କୋଉଠି ଟିକେ ନିରୋଳାରେ ଦେଖା ହେଇ ଯାଇ ପାରନ୍ତା- ହେଇଟି ସୋମୁ ଭାରି ସୁନ୍ଦର ଗୋରୀ ହେଇ ପଡ଼ଚି । ନାଇଁ ?

ସୋମୁ - ତୁ ପରା ନିଜେ ଦେଖିବୁ ।

ବକ୍ରେ - ଅବଶ୍ୟ- ଅବଶ୍ୟ । କେତେ କେଜି ?

ସୋମୁ - କେତେ କେଜି ? ଯନ୍ତ୍ର ଆଣିଚୁ ? ଯଦି ନ ଆଣିଚୁ ତା ହେଲେ ଯା ନେଇକି ଆସିବୁ । ଝିଅ ପାଖକୁ ସିଧା ଚାଲିଯିବୁ । କହିବୁ ଏ ଯନ୍ତ୍ର ଉପରେ ଛିଡ଼ା ହୁଅ । ଓଜନ ନେବି । ତା ପରେ ବାହାଘର ଫାହାଘର କଥା କଥା ହବା । ଯା- ମୁଁ ଯାଉଚି । ବୁଦ୍‌ବକ୍ !

ବକ୍ରେ - ଓହୋ ତୁ ତ ଖାଲି ରାଗିଯାଉଚୁ । ରାଗ ନା- ରାଗ ନା- ମୋ ଭାଇଟା ପରା ତାକୁ ଯଦି ଟିକେ ଏଇଠିକି ଡାକି ଆଣି ପାରନ୍ତୁ ...

ସୋମୁ - ସେ କଣ ଏଠିକି ଆସିବାକୁ ରାଜୀ ହବ ?

ବକ୍ରେ - ହବ ହବ । ତୁ କହିଲେ ହବ ।

ସୋମୁ - କେଜାଣି ? ହଉ ଦେଖେଁ । ତୁ କିନ୍ତୁ ଏଇଠି ଥିବୁ । ଅନ୍ୟ କୁଆଡେ ଚାଲି ଯିବୁ ନାହିଁ । ଆଉ ହୁସିଆର୍ ତାକୁ ଓଜନ ଫୋଜନ କଥା ଜମା କହିବୁ ନାହିଁ ।

ବକ୍ରେ - ହେଇଟି ସୋମୁ !

ସୋମୁ - କଣ ?

ବକ୍ରେ - ହେଁଃ... ହେଁଃ.... ହେଁଃ- ତାକୁ ତୁ ମୋ ନାଁଟା କହି ଦେଇ ନାହୁଁତ ?

ସୋମୁ - କୋଉ ନାଁ ? ସୁଦୀପ୍ତ ନା ବକ୍ରେଶ୍ୱର ? (ହସିଲା) ହାଃ... ହାଃ.... ହାଃ- ତୁ ଜମା ଡର ନା । ତା ନାଁଟା ବି ପୁରୁଣା କାଳିଆ- ସୁଶୀଳା । ଡାକ ନାଁ ସୁଶୀ । ଠିକ୍ ମିଶିଯିବ ।

ବକ୍ରେ - (ପଛରୁ) ହେଇଟି ! ସୋମୁ !

ସୋମୁ - ପୁଣି କଣ ?

ବକ୍ରେ - ସୋମୁ ! ମାନେ... ମାନେ- ମୁଁ କଣ କହୁଥିଲି କି ଦେଖିବାକୁ ପତଳୀ ହେଇ ଭାରି ସୁନ୍ଦର ଭାରି ଗୋରା । ନାଇଁ ?

ସୋମୁ - ନାଇଁ ଭାରି କାଳୀ ହେଇ ମୋଟୀ । ଓଜନ ପଞ୍ଚାଅଣୀ କେଜି । ବାହା ହେଲେ ହୋ । ନ ହେଲେ ନ ହୋ । ମୁଁ ଯାଉଚି । (ଚାଲିଗଲା) ।

ବକ୍ରେ - (ପଛରୁ) ସୋମୁ ! ସୋମୁ ! (ସୋମୁ ଶୁଣିଲା ନାହିଁ) ହୁଁଃ ! କଥାଟେ କହୁଚି ପଳଉଚି (ଚେୟାର୍‌ରେ ବସିଲା । ହଠାତ୍ ନିଜ ବେଶଭୂଷା ସମ୍ପର୍କରେ ସଚେତନ

ହୋଇ ପଡ଼ିଲା ଓ ପେଣ୍ଟ ଜାମା ଆଦି ଆଉଁସି ଘସି ସଜାଡ଼ି ନେଲା । ତାପରେ ଡ଼ାକିଲା) ପୁରନ୍ଦର ! ପୁରନ୍ଦର !

ପୁର - (ପାଖକୁ ଚାଲି ଆସିଲା) ମୋତେ ଡାକିଲେ ?

ବକ୍ରେ - ତୁ ସେଠି ଖଣ୍ଡେ ବାଟରେ ବସି କଣ କରୁଚୁ ? ସେଣ୍ଟ ପେଣ୍ଟ କ୍ରିମ ଫ୍ରିମ କଣ ସବୁ ଆଣିଚୁ ବାହାର କଲୁ- ମୁଁ ଟିକେ ଲଗେଇ ପକାଏଁ- ଜଲ୍‌ଦି ।

ପୁର - ସେଣ୍ଟ ପେଣ୍ଟ କ୍ରିମ୍ ଫ୍ରିମ୍ ତ ମୁଁ କିଛି ଆଣି ନାହିଁ ।

ବକ୍ରେ - ଆଣି ନଉଁ ? ତୁ ଗୋଟେ ନିହାତି ବାଜେ ଲୋକ ଅଛୁ ଦେଖୁଚି । ଏତେ ବଡ ଗୋଟେ ବାହାଘର । କେତେ ସୁନ୍ଦର ପୁଅ ଝିଅ ବେଶଭୂଷାହେଇ ବାସ୍ନା ଫାସ୍ନା ମାରି ବୁଲୁଛନ୍ତି । ଯଦି କେତେବେଳେ କୋଉ ଝିଅ ଫିଅ ସାଙ୍ଗରେ ଦେଖା ହେଇଗଲା ?

ପୁର - ଆପଣ ପରା ଆସିଲାବେଳେ ଏତେ କ୍ରିମ୍ ଫ୍ରିମ୍ ସେଣ୍ଟ୍ ପେଣ୍ଟ୍ ମାରି ଆସିଥିଲେ ।

ବକ୍ରେ - ମାରି ଆସିଥିଲି ବୋଲି କଣ ଆଉ ମାରିବାକୁ ମନା ଅଛି ? ଆଚ୍ଛା ହଉ ଦେଲୁ ଦେଲୁ କିଛି ନ ହେଲେ ଚିରୁଣୀ ଫିରୁଣୀ କଣ ଆଣିଚୁ ଦେଲୁ ।

ପୁର - ଚିରୁଣୀ ଫିରୁଣୀ ବି ତ ମୁଁ ଆଣି ନାହିଁ ।

ବକ୍ରେ - ଆଉ କଣ ଆଣିଛୁ ? ପିକଦାନୀ, ଭୃସଙ୍ଗପତ୍ର, ନାସଡ଼ବା ? ହୁଁଃ ... ! ସେଣ୍ଟ୍ ନାହିଁ - କ୍ରିମ ନାହିଁ - ଚିରୁଣୀଟେ ବି ନାହିଁ । କଣ ଯେ କରାଯିବ ? ପୁରନ୍ଦର ! ତୁ ଗୋଟେ ଏକଦମ୍ ବାଜେ ଲୋକ ଅଛୁ ଦେଖୁଚି । ହଉ... ହଉ... ଦେଖିଲୁ... ଦେଖିଲୁ ମୋ ମୁଣ୍ଡବାଳ ଫାଳ କ୍ରିମ୍‌ଫ୍ରିମ୍ ସେଣ୍ଟ୍ ପେଣ୍ଟ୍ ସବୁ ଠିକ୍ ଅଛି ନା ନାହିଁ ।

ପୁର - ଅଛି... ଅଛି । ସବୁ ଠିକ୍ ଅଛି ।

ବକ୍ରେ - ଓହୋ ଭଲ୍‌କି ଦେଖ୍ ହୋ- ବାଜେ ଲୋକଟେ ! ଖଣ୍ଡେ ବାଟରେ ଛିଡା ହେଇ କହିଦଉଚି ।

ପୁର - (ପାଖକୁ ଆସି ସୁଂଘିଲା ଓ ମୁଣ୍ଡକୁ ଚାରିପଟୁ ଦେଖିଲା) ହଁ... ହଁ- ସବୁ ଠିକ୍ ଅଛି । କ୍ରିମ୍‌ଫ୍ରିମ୍ ସେଣ୍ଟ୍‌ପେଣ୍ଟ୍ ସବୁ ଠିକ୍ ବାସନା ବାହାରୁଚି । ହେଲେ ସାର୍ ଆପଣ ଏଠି କଣ କୋଉ ଝିଅକୁ ... ?

ବକ୍ରେ - ଏଠି କୋଉ ଝିଅକୁ ଦେଖିବାକୁ କଣ ମନା ଅଛି ?

ପୁର - ଅଛି । ସେ କୀଚକେଶ୍ୱର ହର୍ଷବାଲା ଆପଣଙ୍କୁ କଣ କହିଥିଲେ ମନେ ନାହିଁ ?

ବକ୍ରେ - ମାର ଗୁଲି ସେ ହର୍ଷବାଲାକୁ । ମୁଁ ଅଲବତ୍ ଦେଖିବି ।

ପୁର - ଦେଖିଲେ ଦେଖନ୍ତୁ । ହେଲେ ସେ ବି ଏ ବାହାଘରକୁ ଆସି ଥାଇ ପାରନ୍ତି । ସେ ଯଦି ଆପଣଙ୍କୁ ଦେଖି ପକେଇଲେ ନା ତା ହେଲେ ଝମେଲା କରିଦେବେ । ଏ କଥାକୁ ଖିଆଲ ଅଛି ତ ?

ବକ୍ରେ - ହୋନେ ଦୋ ଝମେଲା- ମୁଁ ବି ଝମେଲା କରିଦେବି । ଏକଦମ୍ ଗୋରୀ ପତଳୀ ସୁନ୍ଦରୀ ଝିଅ । ଦେଖିବି ନାହିଁ ? ଅଲବତ୍ ଦେଖିବି । ଆଉ କଣ ସେ କାଳୀ ମୋଟୀଟାକୁ ଦେଖିବି ? (ହଠାତ୍ ଦୂରରେ ସୋମୁ ଓ ସୁଶୀଳାକୁ ଦେଖିପକାଇ) ହେଇ... ହେଇ ଆସିଗଲେ ଆସିଗଲେ- ପୁରନ୍ଦର । ପଳା ପଳା ତୋ ଯାଗାକୁ ପଳା ! ଓହୋ ପଳା କହୁଚି ପରା- (ପୁରନ୍ଦର ଚାଲିଗଲା) ନ ଡାକିଲେ ଜମା ଆସିବୁ ନାହିଁ କହଦେଉଚି । (କଣ କରିବ ଠିକ୍ କରି ପାରୁନାହିଁ । ବସୁଛି । ଉଠୁଛି । ହାତ ମକୁଛି । ଚାରି ଆଡକୁ ଚାହିଁ ଦେଖୁଛି ଆଉ କିଏ ଦେଖିଲା କି) ।

ସୋମୁ - (ପାଖାପାଖି ହେଲାପରେ) ଏଇ ବାଟେ- ଏଇ ବାଟେ- (ପାଖକୁ ଆସିଗଲା । ପଛରେ ସୁଶୀଳା) ବକୁ ! (ବକ୍ରେଶ୍ୱର ଭାରି ଖୁସିଭାବ ଦେଖାଇ ହାତ ମଳିଲା ଓ ନୀରବ ହସ ହସିଲା) ଯେ ମୋର ବନ୍ଧୁ ବକ୍ରେଶ୍ୱର । ବକ୍ରେଶ୍ୱର ଦାସ । ଯାହା କଥା ମୁଁ ଆପଣଙ୍କୁ କହୁଥିଲି । M.B.A. ସାରି ଡକ୍ଟରେଟ୍ କରୁଚି । ହଉ ! ତମେ ଦି'ଜଣ ବସି ଗପସପ କରୁ ଥା । ମୁଁ ଟିକେ ତେଣେ କାମ ଦେଖୁଚି । ସୁଶୀ ଦେବୀ ! ଆପଣ ଥିବେ । ମୁଁ ଆସି ଆପଣଙ୍କୁ ନେଇଯିବି । ବକୁ ! ମୁଁ ଗଲି । (ବାହାରିଲା) ।

ବକ୍ରେ - (କିଛିଟା ଶଙ୍କିତ) ଏଁ ! ତୁ- ତୁ ଯିବୁ ? ବସିବୁ ନାହିଁ ? ଯିବୁ ?

ସୋମୁ - ମୁଁ ଏଠି ବସିବି ? ବୁଦ୍ଧୁବକ୍ !

ବକ୍ରେ - ମାନେ ମାନେ ମୁଁ ଏକା ଏକା ...

ସୋମୁ - ଚୋପ୍ ! ବୁଦ୍ଧୁବକ୍ ... (ଚାଲିଗଲା)

ବକ୍ରେ - (କଣ କହିବ ହଠାତ୍ କିଛି ସ୍ଥିର କରି ପାରିନାହିଁ) ହେଁଃ... ହେଁଃ.... ହେଁଃ... ସୋମୁଟା ମୋର ପୁରୁଣା ବନ୍ଧୁ ତ - ହେଁଃ ହେଁଃ ହେଁଃ ...

ସୁଶୀ - ହଁ ମୋତେ କହୁଥିଲେ ।

ବକ୍ରେ - ହେଁଃ ... ହେଁଃ ... ହେଁଃ- ଭାରି ସୁନ୍ଦର ।

ସୁଶୀ - କଣ ସଜାସଜି ନା ... ?

ବକ୍ରେ - ହେଁଃ ... ହେଁଃ ... ହେଁଃ - ସୋମୁ ମୋତେ କହିଲା ବାହାଘରକୁ ଅନେକ ସୁନ୍ଦର ସୁନ୍ଦର ଝିଅ ଆସିଛନ୍ତି । ତାଙ୍କ ଭିତରୁ ଯିଏ ସବୁଠୁ ସୁନ୍ଦର ତାଙ୍କ ସାଙ୍ଗରେ ତୋର ଆଜି ଭେଟ କରେଇ ଦେବି । ହେଁଃ ହେଁଃ ହେଁଃ ...

ସୁଶୀ - କିଏ ଗୋପା ତ ? ହଁ ସେ ଭାରି ସୁନ୍ଦର । ହେଲେ ସେ ତ ନିଜେ କନିଆ ।

ବକ୍ରେ - ନା ସେ ନୁହେଁ ।

ସୁଶୀ - ଆଉ କିଏ ? ମୁଁ ? ମିଛ । ସୋମୁବାବୁ ବହୁତ ବଢେଇ କହି ଦେଇଛନ୍ତି ।

ବକ୍ରେ - ହେଁଃ ହେଁଃ ହେଁଃ - ନାଇଁ ନାଇଁ ସତ । ଆପଣ ସତରେ ଭାରି...

ସୁଶୀ - ନାଇଁ... ନାଇଁ... ବରଂ ଆପଣ - ସୋମୁବାବୁ ମୋତେ କହିଲେ ସୁଶୀ ଆସ

ତମକୁ ଆଜି ଏମିତି ଜଣେ ଭାରି ସୁନ୍ଦର ଯୁବକଙ୍କ ସାଙ୍ଗରେ ଭେଟ କରେଇ ଦେବି ଯେ -

ବକ୍ରେ - ହେଁ ହେଁ ହେଁ ନାଇଁ ନାଇଁ ନାଇଁ- ଆପଣଙ୍କ ତୁଳନାରେ ମୁଁ- ମୁଁ ଗୋଟେ ନିହାତି ଗୋଟେ ନିହାତି- (ହଠାତ୍ ସଚେତନ ହୋଇ) ଆରେ ରେ ! ଆପଣ ଏତେବେଳଯାକେ ଛିଡା ହେଇ ରହିଛନ୍ତି ? ବସନ୍ତୁ- ବସନ୍ତୁ ।

ସୁଶୀ - ଆପଣ ବି ତ ଛିଡା ହେଇଚନ୍ତି ।

ବକ୍ରେ - (ବସିଲା । ସୁଶୀଳା ବି) Good- very good- ଏକଦମ୍ fit ।

ସୁଶୀ - Fit ? କଣ ? (ଉଠିପଡ଼ିଲା)

ବକ୍ରେ - ହେଁ... ହେଁ....ହେଁ - ବସନ୍ତୁ ବସନ୍ତୁ । କଥାଟା କଣ କି ଆପଣ ଆପଣଙ୍କ body କୁ ଏମିତି trim କରି ରଖିଚନ୍ତି ଯେ ଏ ଚେୟାର ବି ଆପଣଙ୍କୁ ଏକଦମ୍ fit । ଅଥଚ ଗୁଡେ ବାଜେ ମୋଟୀ ଝିଅ ଅଛନ୍ତି ଯେ କାହାର ଓଜନ ସତୁରୀ କେଜି ତ କାହାର ଓଜନ ଅଶୀ କେଜି ତ କାହାର ଓଜନ ବୟାଅଶୀ କେଜି । ସେମାନେ ଯୋଉ ଚେୟାରରେ ବସି ପଡିବେ ସେ ବିଚରା ଚେୟାରର ହାତଗୋଡ ତତ୍‌କ୍ଷଣାତ୍ ଭାଙ୍ଗି ଏକଚାଳିଶ ଖଣ୍ଡ ହୋଇଯିବ । (ହସି ଉଠିଲା) ହାଃ ହାଃ ହାଃ - (ସୁଶୀଳା ମଧ) ଆପଣଙ୍କର ?

ସୁଶୀ - ମୋର ? କଣ ? ଓଜନ ?

ବକ୍ରେ - ହେଁ... ହେଁ....ହେଁ- ନାଇଁ... ନାଇଁ ମାନେ କଥାଟା କଣ କି ଆପଣ ଭାରି slim ତ ସେଥିପାଇଁ ଭାରି ସୁନ୍ଦର ।

ସୁଶୀ - ମାନେ ? ମୋଟା ହେଇଗଲେ କଣ ମୁଁ ସୁନ୍ଦର ଦିଶିବି ନାହିଁ ?

ବକ୍ରେ - ନା ନା ନା ନା- ଜମା ନୁହେଁ ଜମା ନୁହେଁ-ଆପଣ ମୋଟା ହୋଇଗଲେ ବି ସୁନ୍ଦର ଦିଶିବେ । ପତଳା ହୋଇଗଲେ ବି ସୁନ୍ଦର ଦିଶିବେ ।

ସୁଶୀ - ମୋଟା ହୋଇଗଲେ ଖାଲି ଯାହା ଚେୟାର ଫେୟାର ଭାଙ୍ଗି ପକେଇବି । ନାଇଁ ? (ଉଭୟେ ହସିଉଠିଲେ) ଆପଣଙ୍କୁ ପତଳା ଝିଅ ଭାରି ପସନ୍ଦ । ନୁହେଁ ? ତେବେ କଥାଟା କଣ କି ମୁଁ ବି ଏବେ ଆସ୍ତେ ଆସ୍ତେ ମୋଟୀ ହୋଇ ଯାଉଚି ତ ପୁଣି କେବେ ଦେଖା ହେଲାବେଳକୁ-

ବକ୍ରେ - ମୋଟୀ ହୋଇ ଯାଉଚନ୍ତି ତ କଣ ହୋଇଗଲା ସେଥୁ ? ମୋଟୀ ହେଲେ ବି ଆପଣ ଭାରି ସୁନ୍ଦର ଦିଶିବେ ।

ସୁଶୀ - ତେବେ ମୁଁ ମୋଟା ହୁଏ କି ପତଳା ହୁଏ ସେଥିରେ କଣ ଯାଏ ଆସେ ଆପଣଙ୍କର ? ଆପଣଙ୍କ ସାଙ୍ଗରେ ଆଉ କେବେ ଦେଖା ହବ କିଏ ଜାଣେ ?

ବକ୍ରେ - ନା ନା-ନିଶ୍ଚେ ଦେଖା ହବ-ନିଶ୍ଚେ ଦେଖା ହବ ।

ସୁଶୀ - କେଜାଣି ?ସମସ୍ତେ ସେମିତି କହନ୍ତି । (ଏକାଠି ବସି କଥାବାର୍ତ୍ତା ହେଲେ)

ନିତ୍ୟା - (ଗୀତ ଗାଇ ଗାଇ ଆସିଛନ୍ତି) ଆରେ ମହାଶୟ ଆପଣ ସେତେବେଳୁ ଏଇଠି

ବସିଚନ୍ତି ? ମୁଁ ଏ ଭିତରେ କେତେଥର କେ ବୁଲି ଆସିଲିଣି (ସୁଶୀଳାକୁ ଦେଖି) I see - I see ! (ପାଖକୁ ଆସି ନିମ୍ନ ସ୍ୱରରେ) ସେଇ ମିସ୍ କେଜି ନା ? ହା... ହା... ହା... (ସୁଶୀଳା ଆଡ଼କୁ ଚାହିଁ । Good - very good- ଭାରି ସୁନ୍ଦର-ଭାରି ସୁନ୍ଦର choice - ମୋର ତାହେଲେ ଏଥର ଏଠୁ ଛୁଟି ନେଇ ଯିବାର କଥା । ନା କଣ ସାର୍ ? ମୁଁ ଗଲି । ଶୁଭ ରାତ୍ରି । କିନ୍ତୁ ସାର୍ ଯଦି କିଛି interesting ଘଟନା ଘଟେ ମୋତେ ଯେମିତି ନିମନ୍ତ୍ରଣଟେ ମିଳେ - ହାଃ... ହାଃ... ହାଃ... (ହସି ହସି ଚାଲିଗଲେ) ।

ବଙ୍କେ - (ଦୁର୍ବଳଭାବେ ହସିଲା ଓ ତାପରେ ସୁଶୀଳାକୁ ଶଙ୍କିତ ଦୃଷ୍ଟିରେ ଚାହିଁଲା) ଜଣେ ଅତିଥି । ଟିକେ ସ୍କୁ ଢିଲା ।

ସୁଶୀ - (କିଂଚିତ୍ ଉଚ୍ଚସ୍ୱରରେ) କିନ୍ତୁ ସେ ଜଣେ କୋଉ ମିସ୍ କେଜି କଥା କହୁଥିଲେ । ସେ ମିସ୍ କେଜି କିଏ ?

ବଙ୍କେ - ନାଇଁ ନାଇଁ ନାଇଁ ନାଇଁ - ମିସ୍ କେଜି ବୋଲି କେହି ନାହାନ୍ତି ତ କେହି ନାହାନ୍ତି ତ - ।

ସୁଶୀ - ନାହାନ୍ତି ତ ସେ କହିଲେ କାହିଁକି ?

ବଙ୍କେ - ହେଁଃ ହେଁଃ ହେଁଃ ... ତାଙ୍କର ମାନେ ତାଙ୍କର ଟିକେ ସ୍କୁ ଢିଲା ତ କଣ କେତେବେଳେ କହିଦଉଚନ୍ତି । କେଜି ମାନେ ତ କିଲୋଗ୍ରାମ । ମିସ୍ କିଲୋଗ୍ରାମ ବୋଲି କଣ କାହାର ନାଁ ହୁଏ ?

ସୁଶୀ - ହୁଏ ହୁଏ । ଝିଅଟା ଯଦି ମୋଟୀ ହେଇଥାଏ ତାକୁ ଲୋକେ ଥଟାରେ ମିସ୍ କିଲୋଗ୍ରାମ ବି କହିପାରନ୍ତି । ଆପଣଙ୍କର କଣ ସେ ଭଳି କୌଣସି ମୋଟୀ ଝିଅ ସାଙ୍ଗରେ ... ।

ବଙ୍କେ - ନାଇଁ ତ ନାଁଇ ତ- ମୋର କୌଣସି ମୋଟୀ ଝିଅ ସାଙ୍ଗରେ କିଛି ସଂପର୍କ ନାହିଁ ତ । ମୁଁ ତ ମୋଟୀ ଝିଅମାନଙ୍କୁ ଏକଦମ୍ ମାନେ ଏକଦମ୍ ନାପସନ୍ଦ କରେ ।

ସୁଶୀ - ସତ କହୁଚନ୍ତି ?

ବଙ୍କେ - ହଁ ସୁଶୀ ଦେବୀ ମୋତେ ବିଶ୍ୱାସ କରନ୍ତୁ । ମୋର ସେଇଭଳି କୌଣସି....

ପୁର - (ମଝିରେ ଭାରି ବ୍ୟସ୍ତ ହୋଇ ପଶି ଆସି) ସାର୍- ସାର୍ !

ବଙ୍କେ - ପଳା ପଳା ଏଠୁ- ହଁ ସୁଶୀ ଦେବୀ ମୁଁ ଯାହା କହୁଥିଲି....

ପୁର - ସାର୍ ! ଟିକେ ଶୁଣନ୍ତୁ ସାର୍-ଭାରି ଜରୁରୀ କଥା ।

ବଙ୍କେ - ପଳା କହୁଛି ପରା- ତତେ ଏଠିକି ଆସିବାକୁ କିଏ କହିଲା ?ସୁଶୀ ଦେବୀ ! ସତ କହୁଚି ମୋର ସେଇଭଳି କୌଣସି- (ପୁରନ୍ଦରକୁ) ଓହୋ ! ପଳା କହୁଚି ପରା ।

ପୁର - ସାର୍ ଭାରି ଜରୁରୀ କଥା । ଟିକେ ଶୁଣିଯାନ୍ତୁ ।

ବଙ୍କେ- ଗୋଟେ ନିହାତି ବାଜେ ଲୋକଟେ ! (ସୁଶୀଳାକୁ) ସୁଶୀ ଦେବୀ ! ଗୋଟେ

ମିନିଟ୍- Please - Please - (ପୁରନ୍ଦର ଓ ବକ୍ରେଶ୍ୱର ଟିକେ ଦୂରକୁ ଚାଲି ଗଲେ । ବିରକ୍ତି ସହ ନିମ୍ନ ସ୍ୱରରେ) କଣ ?

ପୁର - (ନିମ୍ନ ସ୍ୱରରେ) ସାର୍ ! ସେ କୀଚକେଶ୍ୱର ହର୍ଷବାଲା ଆଜ୍ଞା ଆପଣ ଦି'ଜଣଙ୍କୁ ଦେଖି ପକେଇଲେ କି କଣ ଯାଡୁକୁ ମାଡି ଆସୁଚନ୍ତି ।

ବକ୍ରେ - ମାର୍ ଗୁଲି ତୋ ... - (ସଚେତନ ଓ ଶଙ୍କିତ) ଏଁ । ଯାଡୁକୁ ମାଡି ଆସୁଚନ୍ତି ? ସତରେ ? ଠିକ୍ ଦେଖିଚୁ ?

ପୁର - ଠିକ୍ ଦେଖିଚି । ହେଇ ଆପଣଙ୍କ ବାଁ ଆଡକୁ ଅନଉ ନାହାନ୍ତି ସେଇ ନାଲି ଝାଡ ଲାଇଟ୍ ତଳକୁ ?

ବକ୍ରେ - (କଣେଇ ଚାହିଁ ଦେଖିପକେଇଲା) ହଁ ହଁ- ୟେ ତ ସେଇ । ପୁରନ୍ଦର ! କଣ କରିବା ? କଣ କରିବା ? ସୁଶୀଳା ଦେବୀ ବି ସେଠି ବସିଚନ୍ତି ।

ପୁର - ଆପଣ ଭାରି ଜରୁରୀ କାମ ଅଛି ବୋଲି କହି ଦେଇ ଶୀଘ୍ର ପଳାନ୍ତୁ । ତାଙ୍କୁ ବି ପଳେଇବାକୁ କହନ୍ତୁ । ଜଲ୍‌ଦି ।

ବକ୍ରେ - ହଁ... ହଁ... ସେୟା କରିବା- ସେୟା କରିବା । ତୁ ପଳା । ଗେଟ୍ ସେ ପାଖରେ ଛିଡା ହେଇଥିବୁ । ମୁଁ ଯାଉଚି । ହରିହରି ! କି ଝମେଲା ! (ପୁରନ୍ଦର ଚାଲିଗଲା । ବକ୍ରେଶ୍ୱର ସୁଶୀଳା ପାଖକୁ ଆସିଲା । ବ୍ୟସ୍ତ ସ୍ୱରରେ) ସୁଶୀ ଦେବୀ ! Very sorry- ଭାରି ଦୁଃଖିତ । ମୋତେ ସାଙ୍ଗେ ସାଙ୍ଗେ ପଳେଇ ନାଇଁ ମାନେ ସାଙ୍ଗେ ସାଙ୍ଗେ ଯିବାକୁ ହବ । ଆପଣ ବି ଆଉ କାହିଁକି ଏଠି ଏକା ଏକା ବସିବେ ? ଆପଣ ବି ଯାନ୍ତୁ । କି ବିପଦ ! (ଫେରିଆସି) କିନ୍ତୁ ମୁଁ ସତ କହୁଚି ମୋର ସେଭଳି କୌଣସି ମୋଟୀ କି ପତଳୀ ଝିଅ ସାଙ୍ଗରେ କିଛି ସଂପର୍କ ନାହିଁ । ଗଲି । ଧୁତ୍‌ତେରି ! ଆସିଗଲା ନା କଣ ! କି ବିପଦ - (ଚାଲିଗଲା) ।

ସୁଶୀ - (କିଛିଟା ଆଶ୍ଚର୍ଯ୍ୟ ସହ ତା ଯିବା ବାଟକୁ କିଛି ସମୟ ଚାହିଁ ରହିଲା ଓ ତାପରେ ବାହାଘର ମଣ୍ଡପ ଆଡକୁ ଯିବାକୁ ବାହାରିଲା) ।

ପୁର - (ବ୍ୟସ୍ତ ହୋଇ ଭିତରୁ ଧାଇଁ ଆସିଛି । ଚେୟାରକୁ ଦେଖାଇ) ଆଜ୍ଞା ! ବାବୁ ?

ସୁଶୀ - କୋଉ ବାବୁ ?

ପୁର - ଯୋଉ ବାବୁ ଏଇଠି ବସିଥିଲେ ।

ସୁଶୀ - ଓ - ବକ୍ରେଶ୍ୱରବାବୁ ? ସେ ତ ଗଲେଣି ।

ପୁର - ଗଲେଣି ? କୁଆଡ଼େ ଗଲେ ?

ସୁଶୀ - ଯୁଆଡୁ ଆସିଥିଲେ ସିଆଡ଼େ ।

ପୁର - ଯୁଆଡୁ ଆସିଥିଲେ ସିଆଡ଼େ ?

ସୁଶୀ - ତମର ତାଙ୍କ ପାଖରେ କଣ କାମ ?

ପୁର - ଆଜ୍ଞା ! ମୁଁ ପରା ତାଙ୍କ ପାଖରେ -

ସୁଶୀ - (ମଝିରେ) ମୁଁ ପଚାରୁଛି ତୁମର ତାଙ୍କ ପାଖରେ କଣ କାମ ?

ପୁର - ଆମେ ଆଜ୍ଞା ସାଂଗ ହୋଇ ଆସିଥିଲୁ ତ - ସାଙ୍ଗ ହେଇ ଫେରିଥାନ୍ତୁ ।

ସୁଶୀ - ମାନେ ? ତମ ବାବୁଙ୍କୁ କଣ ତାଙ୍କ ଘର ବାଟ ଜଣା ନାହିଁ ନା ଏକା ଏକା ତାଙ୍କୁ ଯିବାକୁ ଡ଼ର ମାଡ଼େ ?

ପୁର - ଆଜ୍ଞା ତା ନୁହେଁ ଯେ ତା ନୁହେଁ ଯେ ସେ ମୋତେ ଗେଟ୍ ପାଖରେ ଅପେକ୍ଷା କରିବାକୁ କହିଥିଲେ ତ - ହେଲେ ଆସିଲେ ନାହିଁ ବୋଲି ମୁଁ ତାଙ୍କୁ ପୂର୍ବରୁ ପଶ୍ଚିମ ଉତ୍ତରରୁ ଦକ୍ଷିଣ କେତେ ଆଡ଼େ ଖୋଜି ସାରିଲିଣି । ପାଉନାହିଁ ।

ସୁଶୀ - ଆଉ ପାଇବ ନାହିଁ ।

ପୁର - ଆଉ ପାଇବି ନାହିଁ ? କାହିଁକି ଆଜ୍ଞା ?

ସୁଶୀ - ସେ ଉଡ଼ିଗଲେଣି ।

ପୁର - ଉଡ଼ିଗଲେଣି ?

ସୁଶୀ - ଚଢ଼େଇ ପରି ।

ପୁର - ଚଢ଼େଇ ପରି ?

ସୁଶୀ - ଚଢ଼େଇ ପରି ହେଇଚନ୍ତି । ଉଡ଼ିଯିବେ ନାହିଁ ?

ପୁର - ଚଢେଇ ପରି ହେଇଚନ୍ତି ? (ହଠାତ୍ କଥାଟା ବୁଝିପାରି ହସି ଉଠିଲା) ହେଇଥିବେ - ହେଇଥିବେ - ସେଇଥିପାଇଁ ପରା ତାଙ୍କୁ ସେ ହର୍ଷବାଲା ବାବୁ ଡ଼ାକୁଚନ୍ତି କାଣ୍ଡିବ - (ହଠାତ୍ ସଚେତନ ହୋଇଯାଇ ଅଟକି ଗଲା) ନାଇଁ ନାଇଁ ଆଜ୍ଞା ଲାଗିଚନ୍ତି ଲାଗିଚନ୍ତି - ଜୋର୍‌ସୋର୍‌ରେ ଲାଗିଚନ୍ତି -

ସୁଶୀ - କୋଉଥିରେ ଲାଗିଚନ୍ତି ?

ପୁର - ମୋଟା ହେବେ ମୋଟା । ଏକାଅଣୀ କେଜି ।

ସୁଶୀ - କେତେ ? କେତେ ? ଏକାଅଣୀ କେଜି ? ତାହେଲେ ତ ଚେୟାର ଫେୟାର ସବୁ ଭାଙ୍ଗି ପକେଇବେ ।

ପୁର - ଭାଙ୍ଗି ପକେଇବେ ? କାହିଁକି ଆଜ୍ଞା ?

ସୁଶୀ - ଏକାଅଣୀ କେଜି ହେବେ - ଯୋଉ ଚେୟାର୍‌ରେ ବସିବେ ସେ ଚେୟାରକୁ ଭାଙ୍ଗି ପକେଇବେ ନାହିଁ ?

ପୁର - (ହସି ହସି) ହଁ ଆଜ୍ଞା - ଭାଙ୍ଗି ପକେଇବେ । (ହଠାତ୍ ସଚେତନ ହୋଇ) ଏଁ - ବାବା ଲୋ ମୁଁ ବି ଯଦି ସେ ହର୍ଷବାଲାଙ୍କ ହାବୁଡ଼ରେ ପଡ଼ିଗଲି ନା ସେ ମୋର ବି ହାଡ଼ଗୋଡ଼ ଭାଙ୍ଗି ପକେଇବେ । ଏକଦମ୍ କୋର୍ଟ ମାର୍ସାଲ୍ । ପଚିଶି କେଜି ଇଟା - ପାଂଚ କିଲୋମିଟର ଦଉଡ଼ । ମୁଁ ଜମା ପାରିବି ନାହିଁରେ ବାବା - ମୁଁ ଗଲି ଗଲି ଗଲି - ବାବା ଲୋ କି ବିପଦ ! (ଧାଇଁ ଚାଲିଗଲା) (ସୁଶୀଳା କିଛିଟା ଆଶ୍ଚର୍ଯ୍ୟ ଓ ଆମୋଦିତ ଦୃଷ୍ଟିରେ ତା ଯିବାକୁ ଚାହିଁ ରହିଲା । ତା ପରେ ସେ ମଧ୍ୟ ଭିତରକୁ ଚାଲିଗଲା)

## ଅଦୃଶ୍ୟ

(ସୁଶୀଳା ଗୋଟିଏ ସୋଫାରେ ବସିଛି । ସ୍ୱପ୍ନ ଦେଖିବାର ଭାବ । ଭିତରୁ ବକ୍ରେଶ୍ୱର ଗାଇ ଗାଇ ଆସୁଛି । ପୂର୍ବ ଅପେକ୍ଷା ମୋଟା ଦିଶୁଛି)

- ଗୀତ -

ଚାଲ ପ୍ରିୟେ ଯିବା କେଉଁ ଏକ ଅଜଣା ରାଜ୍ୟକୁ / କାହା ସାଂଗେ ଆମେ ଆଉ ନ କରି ସାଲିସ୍ / ନ ଥିବେ ସେଠାରେ କେହି କାଳୀ ଆଉ ମୋଟୀ / ଅଣୀ ପଂଚାଅଣୀ / ନ ଥିବେ ସେଠାରେ ବାପା ନ ଥିବ ପୋଲିସ୍ / ରାଗିମାଗି ଯେତେ ଯିଏ ହୁଅନ୍ତୁ ମୁସ୍ତେଜ / ଭାଙ୍ଗିଯିବ ଏକାଥରେ ସମସ୍ତଙ୍କ ତେଜ / ଯେବେ ଆମେ ବାହା ହେଇ ଆସି ପହଂଚିବା / ସମସ୍ତଙ୍କ ବୁଦ୍ଧିବିଦ୍ୟା ହେଇଯିବ miss / ଚାଲ ପ୍ରିୟେ ଯିବା ଆମେ ଏକ ଅଜଣା ରାଜ୍ୟକୁ / କାହା ସାଂଗେ ଆମେ ଆଉ ନ କରି ସାଲିସ୍ / ନ ଥିବେ ସେଠାରେ ବାପା ନ ଥିବ ପୋଲିସ୍ ।

(ସୁଶୀଳା ଓ ବକ୍ରେଶ୍ୱର ହାତ ଧରାଧରି ହୋଇ ନାଚିଲେ । ନାଚ ପରେ ବକ୍ରେଶ୍ୱର ସୁଶୀଳାକୁ ତା ଚେୟାରରେ ବସେଇଦେଇ ଗାଇ ଗାଇ ଧୀରେ ଧୀରେ ଚାଲିଗଲା । ତାପରେ ହଠାତ୍ ସୁଶୀଳା ସଚେତନ ହୋଇ ଉଠି ପଡ଼ି ଚାରିପଟକୁ କିଛି ସମୟ ଲକ୍ଷ୍ୟ କଲା । ଓ ତାପରେ ଭିତରକୁ ଚାଲିଗଲା ।)

## ଚତୁର୍ଥ

(ପ୍ରାୟ ସପ୍ତାହେ ପରେ । ସଂଧ୍ୟା । ବକ୍ରେଶ୍ୱରର ଡ୍ରଇଂ ରୁମ୍ । ସାମ୍‌ନା ସାମ୍‌ନି ସୋଫାରେ ବସିଛନ୍ତି ସୋମୁ ଓ ବକ୍ରେଶ୍ୱର । ସୋମୁ ଜଳଖିଆ ଖାଇ ସାରି ହାତ ଓ ମୁହଁ ପୋଛୁଛି) ।

ବକ୍ରେ - (ବ୍ୟଗ୍ର ସ୍ୱରରେ) ହେଇଟି ସୋମୁ !

ସୋମୁ - ଯାହା କହ ଭାଇ କ୍ଷୀରିଟା ଭାରି ବଢିଆଁ ଲାଗିଲା । କଣ ପକେଇଥିଲ ? କ୍ଷୀର ନା ଖୁଆ ?

ବକ୍ରେ - (ସାମାନ୍ୟ ଅଧୈର୍ଯ୍ୟ ସହ) ସୋମୁ !

ସୋମୁ - (ଡ଼ାକିଲା) ପୁରନ୍ଦର ! ଖିରିଟା ଭାରି ବଢ଼ିଆ ହେଇଚି । ବଧେଇ ।

ବକ୍ରେ - (ସାମାନ୍ୟ ଅଧୈର୍ଯ୍ୟ ସହିତ) ସୋମୁ !

ସୋମୁ - ହଁ ବକ୍ରୁ ତତେ ଗୋଟିଏ କଥା କହିନାଇଁ । ଏ ଭିତରେ ଥରେ ଅନାଦି ସାଙ୍ଗରେ ଦେଖା ହେଇ ଯାଇଥିଲା । ସେଟା ନିଜେ ଗୋଟେ ଅନାଡି । ମୋତେ କହୁଚି ...

ବକ୍ରେ - ସୋମୁ ! ମୁଁ ପରା ତତେ କଥାଟେ ପଚାରୁଚି ।

ସୋମୁ - କୋଉ କଥା ? କହୁନୁ ?

ବକ୍ରେ - ସୋମୁ ! ହେଇଟି ! ଟିକେ ଦେଖା ହୁଅନ୍ତା ନାହିଁ ?

ସୋମୁ - ଅଲବତ୍ ହବ । ଥରେ କଣ ଶହେ ଥର ହବ !
ବଙ୍କେ - ଏତେ ଦିନ ହେଲାଣି ଥରେ ତ ହେଲା ନାହିଁ । ଶହେ ଥର ହବ ।
ସୋମୁ - କାହିଁକି ନ ହବ ? ସେ ଅନାଡି ଅନାଦି ତ ତା କ୍ଲିନିକ୍‌ରେ ବସି ହରଦମ୍ ନାଡି ଦେଖୁଚି । ନ ହେଇ ପାରିବ କାହିଁକି ?
ବଙ୍କେ - ମୁଁ କଣ ସେ ଅନାଡି କଥା କହୁଚି ?
ସୋମୁ - ଆଉ କାହା କଥା କହୁଚୁ ? ହଁ... ହଁ- ମନେ ପଡିଲା- ମନେ ପଡିଲା । ପଣ୍ଡା ଦାନ୍ତ ଡାକ୍ତର୍ କଥା କହୁଚୁ ତ ? ମୁଁ ଭାଇ ଏକଦମ୍ ଭୁଲି ଯାଇଚି । ହେଲେ ମୁଁ ତ ଶୁଣିଚି ଜ୍ଞାନ ଉଦୟ ନ ହେଲାଯାକେ ଜ୍ଞାନଦନ୍ତ ବାହାରେ ନାହିଁ । ତୋର ଯଦି ଜ୍ଞାନ ଉଦୟ ହେଇ ନଥିବ ତା ହେଲେ ତ...
ବଙ୍କେ - (ମଝିରେ ସ୍ୱର ବଢେଇ) ସୋମୁ !
ସୋମୁ - ମାନେ ? ହେଇଚି ? ତୋର ଜ୍ଞାନ ହେଇଚି ଯଦି ତାହେଲେ ଠିକ୍ ବାହାରିଯିବ । ବ୍ୟସ୍ତ ହୋ ନା ।
ବଙ୍କେ - ସୋମୁ ! ମୁଁ ମୋ ଜ୍ଞାନ ଦାନ୍ତ ବାହାରିବା କଥା କହୁଚି ?
ସୋମୁ - ଆଉ କୋଉ ଦାନ୍ତ କଥା କହୁଚୁ ?
ବଙ୍କେ - କୋଉ କଥା କହୁଚି ତୁ କିଛି ଜାଣି ପାରୁନଉଁ ?
ସୋମୁ - ମୁଁ ତ ହଠାତ୍ ଖିଆଲ କରି ପାରୁ ନାହିଁ । କୋଉ କଥା ? (ହଠାତ୍ ସ୍ମରଣ ହେଲା ପରି) ଓହୋ... ହୋ- ତମେ ପ୍ରେମିକ ପୁରୁଷ ଏତେ ଆତୁର ଅବସ୍ଥାରେ ଅଛ ବୋଲି କଣ ମୋର ଖିଆଲ ଅଛି ? ବୁଝିଲୁ ବଙ୍କୁ ଆଜିଯାକେ କିଏ ମୋତେ ଗୋଟେ ମିଛ ପ୍ରେମଟେ ବି କଲା ନାହିଁ । ମୋର ଆଉ ତମ ପ୍ରେମ କଥାଟା ମନେ ରହିବ କେମିତି ? ହେଲେ ତମର ପରା ଥରେ ଦେଖା ହେଉଥିଲା । (ଝରକା ପାଖକୁ ଯାଇ ବାହାରକୁ ଚାହିଁ) ଆଚ୍ଛା । ବଙ୍କୁ ! ତମ ଲନ୍ ଘାସ ଭାରି ଛନ୍ ଛନ୍ ହୋଇ ଭାରି ସୁନ୍ଦର ଦିଶୁଥିଲା । ଏବେ ଟିକେ ଶୁଖିଲା ଶୁଖିଲା ଦିଶୁଚି କାହିଁକି ?
ବଙ୍କେ - ସୋମୁ ! ଆଉ ଥରେ ହବ ନାହିଁ ?
ସୋମୁ - ନ ହବ କାହିଁକି ? ନିଶ୍ଚେ ହବ । ଥରେ କଣ ଶହେ ଥର ହବ । କିନ୍ତୁ ତଥାପି ଭାରି ସୁନ୍ଦର । ତୁ ଭାରି ଭାଗ୍ୟବାନ । ସମସ୍ତଙ୍କ ଭାଗ୍ୟରେ ଜୁଟେ ନାହିଁ । ବୁଝିଲୁ ବଙ୍କୁ very beautiful -
ବଙ୍କେ - ହେଁ ହେଁ ହେଁ... ହଁ ହଁ- ଭାରି ସୁନ୍ଦର । Very beautiful ।
ସୋମୁ - Really Very beautiful - ଆଚ୍ଛା ବଙ୍କୁ ତୁ ମଞ୍ଜି କୋଉଠୁ ପାଇଲୁ ?
ବଙ୍କେ - ମଞ୍ଜି ? କି ମଞ୍ଜି ?
ସୋମୁ - ତୋ ଲନ୍ ଘାସ ମଞ୍ଜି । କି ମଞ୍ଜି କଣ ? କହିଲୁ କହିଲୁ ମୁଁ ଆଣନ୍ତି ।
ବଙ୍କେ - (ମଝିରେ) ସୋମୁ ! ମୁଁ ତତେ ଆମ ଲନ୍ ଘାସ କଥା କହୁଥିଲି ?

ସୋମୁ - ଆଉ କାହା ଲନ୍ ଘାସ କଥା କହୁଥିଲୁ ?

ବଙ୍କେ - ସୋମୁ ! ସେମିତି ବାଙ୍କେ କଥା କହିବୁ ନାହିଁ କହି ଦଉଚି ।

ସୋମୁ - (ହସି ହସି) ଓହୋ ହୋ ହୋ ବୁଝିଲି ବୁଝିଲି । ତୁ ସୁଣୀ ଦେବୀଙ୍କ ସାଙ୍ଗରେ ଦେଖା ହବା କଥା କହୁଥିଲୁ ନା ? କିନ୍ତୁ ବଙ୍କୁ ଏ ଦେଖାଦେଖି କଥାଟା ଏ ଭିତରେ ଭାରି ଅଡୁଆ ଧରି ଯାଇଚି । ତୁ ସେ ଦେଖାଦେଖି କଥା ମୋତେ ଆଉ ଜମା କହନା ।

ବଙ୍କେ - କାହିଁକି ? ସେ କଣ ମନା କଲେ ?

ସୋମୁ - ଖାଲି ମନା କରିଥିଲେ ତ କିଛି କଥା ନ ଥିଲା । ତାଙ୍କୁ ବୁଝାବୁଝି କରା ହେଇ ପାରିଥାନ୍ତା । କିନ୍ତୁ ଦେଖାଦେଖି କଥାଟା ମୁଁ ଯେମିତି କହିଚି ସେ କିଛି କହିବେ କଣ ଚୁପ୍‌ଚାପ୍ ବସି ଖାଲି କାନ୍ଦିଲେ ।

ବଙ୍କେ - (ବ୍ୟସ୍ତ ହୋଇପଡି) କାନ୍ଦିଲେ ? ମୋ କଥା ଶୁଣି କାନ୍ଦିଲେ ? ସୋମୁ ! ଟିକେ କହ କହ ମୋ କଥା ଶୁଣି କାହିଁକି କାନ୍ଦିଲେ ।

ସୋମୁ - ଖାଲି କାନ୍ଦିଲେ ନୁହେଁ ଧାର ଧାର ଲୁହ ଗଡେଇ କାନ୍ଦିଲେ । ତୁ ତାଙ୍କ ପାଖରେ ସେତେବେଳେ ଥିଲେ ତୁ ବି କାନ୍ଦିଥାନ୍ତୁ । ତାଙ୍କ କାନ୍ଦ ଦେଖି ମୋତେ ବି ପରା କାନ୍ଦ ମାଡିଗଲା ।

ବଙ୍କେ - ଟିକେ କହ ପରା କହୁଚି କାହିଁକି କାନ୍ଦୁଥିଲେ ବୋଲି ।

ସୋମୁ - କହି ଆଉ ଲାଭ କଣ ? ସେ କଥା ଶୁଣିଲେ ତ ତତେ ବି କାନ୍ଦ ମାଡିଯିବ ।

ବଙ୍କେ - (ଆବେଗ ସହ) ସୋମୁ ! କହ Please- ମନଟା ଭାରି ଉଚ୍ଚାଟ ଲାଗିଲାଣିରେ ।

ସୋମୁ - ସେ କଥାଟା ଶୁଣିଲା ପରେ ତୁ କନ୍ଦାକଟା କରିବୁ ନାହିଁ ତ ?

ବଙ୍କେ - ନାଇଁ ନାଇଁ କରିବି ନାହିଁ ତୁ କହ ।

ସୋମୁ - ତୁ ତ ଜାଣୁ ସୁଣୀ ଦେବୀ ତତେ କେତେ ଭଲ ପାନ୍ତି । ତୋତେ ବାହା ହବାକୁ ବି ତାଙ୍କର କେତେ ଇଚ୍ଛା । ମୋତେ ଥରେ ଅଧେ ଖୋଲି କରି ବି କହିଚନ୍ତି ସେ କଥା । ହେଲେ ତାଙ୍କ ବାପା ଅନ୍ୟ ପାତ୍ର ଖୋଜିଲେଣି ।

ବଙ୍କେ - ଅନ୍ୟ ପାତ୍ର ଖୋଜିଲେଣି ? ସତ କହୁଚୁ ?

ସୋମୁ - ଖୋଜିଲେ ବି କିଛି କଥା ନ ଥିଲା । ଝିଅଟିଏ ଥିଲେ ତ ସମସ୍ତେ ଏମିତି ପାତ୍ର ଖୋଜନ୍ତି । ହେଲେ କଥାଟା ହଉଚି ତତେ ଏତେ ଭଲ ପାଇ ଶେଷରେ ଅନ୍ୟ ଜଣେ ଲୋକକୁ ବାହା ହୋଇ ଯିବାଟା-

ବଙ୍କେ - ଆମ କଥାଟା ଟିକେ ତାଙ୍କ ବାପାଙ୍କ କାନରେ କେମିତି ପକେଇଦେଇ ହୁଅନ୍ତା ନାହିଁ ?

ସୋମୁ - ଇଲୋ ବାପା ଲୋ ! ତାଙ୍କ ବାପା ଯୋଉ ରାଗୀ ଲୋକ ! ତାଙ୍କ ଝିଅ ପ୍ରେମ କରି ବାହା ହବାକୁ ଚାହୁଁଚି ବୋଲି ଜାଣିଲେ ସେ ଆଉ ସମ୍ପର୍କ

ପଡ଼ିବେ ? ରାଗିକି ଏକଦମ୍ ମୁଣ୍ଡେଇ ହେଇ କଣ ନାଇଁ କଣ କରି ପକେଇବେ । ସେଇ ଭୟରେ ପରା ସୁଶ୍ରୀ ଦେବୀ ବି ତାଙ୍କ ବାପାଙ୍କୁ କି ବୋଉକୁ କିଛି କହିପାରୁ ନାହାନ୍ତି । ନ ହେଲେ ସେ କଣ କହିପାରନ୍ତେ ନାହିଁ ? ଏଇ କଥା କହି ସେ କେତେ କାନ୍ଦିଲେ । କହିଲେ ସୋମୁବାବୁ ! ବାହାଘର ତ ହୋଇ ପାରିବ ନାହିଁ । ଦେଖା କରି ସଂପର୍କ ବଢ଼େଇ ଆଉ ଲାଭ କଣ ! ବରଂ ଆହୁରି ବେଶୀ ବେଶୀ କାନ୍ଦ ମାଡ଼ିବ ।

ବଙ୍କେ - (ବ୍ୟସ୍ତ ଓ ଦୁଃଖିତ) ସୋମୁ ! ସୋମୁ ରେ ! ମୋତେ ତ ଶୁଣୁ ଶୁଣୁ କାନ୍ଦ ମାଡ଼ିଗଲାଣି । କଣ କରାଯିବ କହିଲୁ ।

ସୋମୁ - ମୋର ବି ଭାରି ଇଚ୍ଛା ଥିଲା ସମସ୍ତଙ୍କୁ କହିବୋଲି ତମ ଦିହଁଙ୍କର ବାହାଘର କରେଇଦେବି । ତମ ଯୋଡ଼ିଟା ଭାରି ସୁନ୍ଦର ମାନିଥାନ୍ତା । କିନ୍ତୁ ସେ ଦିନ ଯାହାସବୁ ଜାଣିଲି ତାପରେ ତମର ବାହାଘର ହବା ଦୂରେ ଥାଉ ଦେଖାଟେ ହବା ବି କଷ୍ଟକର ବ୍ୟାପାର ହେଇଗଲାଣି । ଦେଖାଟେ କରି ଆଉ ଲାଭ ବା କଣ ?

ବଙ୍କେ - ସୋମୁ !

ସୋମୁ - କହ ।

ବଙ୍କେ - ତା ହେଲେ ଆଉ କିଛି ହେଇ ପାରିବ ନାହିଁ ? ସୋମୁ ! ସୋମୁରେ !

ସୋମୁ - ହେଇ ପାରିଲା ପରି ତ ଦିଶୁ ନାହିଁ ।

ବଙ୍କେ - ଦିଶୁ ନାହିଁ ? ଜମ୍ମା ଦିଶୁ ନାହିଁ ?

ସୋମୁ - ନା । ତେବେ...

ବଙ୍କେ - ତେବେ ?

ସୋମୁ - ତେବେ ମୁଁ ଭାବୁଚି- ନାଃ ! ସେ କାମ କଣ ତୁ ପାରିବୁ ?

ବଙ୍କେ - ହଁ... ହଁ... ପାରିବି । ତୁ କହ ।

ସୋମୁ - ନାଇଁ... ନାଇଁ ତୁ ପାରିବୁ ନାହିଁ । ସେ ଭାରି ଝମେଲା କାମ । ତୁ କଣ ପାରିବୁ ?

ବଙ୍କେ - ଓହୋ ତୁ କହ ତ ।

ସୋମୁ - କହିବି ? ହଉ ତାହେଲେ ଶୁଣ୍ । ଭାରି ଗଣ୍ଡଗୋଳିଆ କାମ କିନ୍ତୁ । ବୁଝିଥାଉ ! ତାଙ୍କ ବାପା ତ ତାଙ୍କ ସାଙ୍ଗରେ ତୋର ବାହାଘର କରେଇ ଦେବେ ନାହିଁ । ସେଥିପାଇଁ ମୁଁ ଭାବୁଚି (ଟିକେ ରହି ହଠାତ୍ ଜୋର୍ ଦେଇ) ତୁ ତାଙ୍କୁ ଉଠେଇ ନେଇ ପଳା ।

ବଙ୍କେ - (ଚମକି ଯାଇ) ଏଁ ! ଉଠେଇ ନେଇ ପଳେଇବି ? ମାନେ... ମାନେ... ?

ସୋମୁ - ତା ଛଡ଼ା ତ ମୋତେ ଆଉ ଅନ୍ୟ କିଛି ବାଟ ଦିଶୁ ନାହିଁ ।

ବଙ୍କେ - ହେଲେ କୁଆଡେ ନେଇ ପଳେଇବି ?

ସୋମୁ - ଆବେ ଏଟା ଗୋଟେ ନିହାତି ବୁଦ୍ଧୁଟେ ଅଛି ଦେଖୁଚି । ପ୍ରେମିକ ଯେତେବେଳେ

ପ୍ରେମିକାକୁ ନେଇ ପଳାଏ ସେତେବେଳେ କଣ ଲୋକଙ୍କୁ ଡାକି ହାକି ପଚାରେ କୁଆଡେ ନେଇ ପଳେଇବି ବୋଲି ନା ଯୁଆଡେ ଯାଏ ସେ କଥା ସମସ୍ତଙ୍କୁ କହିଦେଇ ଯାଏ ? ତୁମର ଯୁଆଡେ ମନ ହବ ତମେ ସିଆଡେ ପଳେଇବ । କୁଆଡେ ଯିବ କଣ ?

ବଙ୍କେ - ଅବଶ୍ୟ... ଅବଶ୍ୟ- ଆମର ଯୁଆଡେ ମନ ହବ ଆମେ ସିଆଡେ ପଳେଇବୁଁ । ହେଲେ ସୋମୁ କଥାଟା କଣ କି ତାଙ୍କ ବାପା ଭାରି ରାଗୀ ଲୋକ ତ ... ଯଦି ଜାଣିଯିବେ ...

ସୋମୁ - ଜାଣିଯିବେ ତ ।

ବଙ୍କେ - ତା ହେଲେ ତ ଭାରି ଝମେଲା କରିଦେବେ ।

ସୋମୁ - କରି ଦେବେ ତ ।

ବଙ୍କେ - କରିଦେବେ ତ ?

ସୋମୁ - କରିବେ ନାହିଁ ? ତାଙ୍କ ଝିଅ ଘର ଛାଡି ପଳେଇବ - ସେ ଚୁପ୍ ହେଇ ବସିବେ ? ପାଟିପାଟି ଯାହାତ କରିବେ କରିବେ ତା ସାଙ୍ଗକୁ ପୋଲିସକୁ ବି ତମେ ପଛରେ ଲଗେଇ ଦେଇପାରନ୍ତି ।

ବଙ୍କେ - (ଶଙ୍କିତ) ପୋଲିସ ? ମାନେ ପୋଲିସଙ୍କୁ ଆମ ପଛରେ ଲଗେଇ ଦେବେ ?

ସୋମୁ - ଏଟା ଗୋଟେ Kidnapping ମାନେ ଅପହରଣ କେଶ୍ । ପୋଲିସକୁ ଲଗେଇବେ ନାହିଁ ?

ବଙ୍କେ - ପୋଲିସ୍ ଆମକୁ ନେଇ ହାଜତ୍‌ରେ ପୂରେଇଦବ ?

ସୋମୁ - ହାଜତ୍‌ରେ ପୂରେଇଦବ ନାହିଁ ଆଉ କଣ ତମକୁ ନେଇ ହୋଟେଲ୍ ଓବେରୋୟରେ ରଖିବ ? ବୁଡବକ୍ କାହିଁକା ! ତୋ ସାଙ୍ଗରେ ଏତେ ବକ୍ ବକ୍ ହବାକୁ ମୋର ବେଳ ନାହିଁ । ତୁ ଯା ତୋ ଶୋଇବା ଘରେ କବାଟ କିଳି କନ୍ଥା ଘୋଡେଇ ହେଇ ଶୋଇ କନ୍ଦାକଟା କରିବୁ । ତୋ ପରି ଭୀରୁ ଅପଦାର୍ଥକୁ ପ୍ରେମ ପ୍ରେମ କରିବା ପୋଷେଇବ ନାହିଁ । ମୁଁ ଯାଉଚି ।

ବଙ୍କେ - ଓହୋ ! ତୁ ତ ଖାଲି ରାଗିଯାଉଚୁ । ଗୋଟେ ଘୋର ବିପଦ ସମୟ । ସବୁ ଜିନିଷ ଭାବି ଚିନ୍ତି କରିବାର ନୁହେଁ ?

ସୋମୁ - ତୁ ତୋର ଭାବୁ ଥା । ମୁଁ ଯାଉଚି ।

ବଙ୍କେ - ଓହୋ ସୋମୁ ଶୁଣ- ମୋ କଥାଟା ଶୁଣ ।

ସୋମୁ - ଶୁଣିବି ଆଉ କଣଟେ ? ତୋର ତ ତାଙ୍କ ବାପାଙ୍କୁ ଡର । ନେଇ ପଳେଇ ଯିବାକୁ ଡର । ପୋଲିସ୍‌କୁ ଡର । ସବୁଥିକି ଡର । ତୁ ପ୍ରେମ କରିବୁ କଣଟେ ? ଆରେ ବାବୁ ! ପ୍ରେମ କଲେ ଏମିତି ହୁଏ । ନାନା ପ୍ରକାରର ବିପଦ ଆପଦ ଆସେ । ଯିଏ ସଚ୍ଚା ପ୍ରେମିକ ପ୍ରେମିକା ସେମାନେ ସେ ସବୁକୁ ପରୱା କରନ୍ତି ନାହିଁ । ବୁଝିଲୁ ? ରୋମିଓ ଜୁଲିଯେଟ ହୀର ରନ୍‌ଝା କେଦାର ଗୌରୀ

ଇତ୍ୟାଦି ଇତ୍ୟାଦି ମାନେ ତାଙ୍କ ପ୍ରେମ ପାଇଁ କେତେ ବିପଦ ସାମନା କରିଥିଲେ ଜାଣିନାହୁଁ ? ସେମାନେ କଣ ତୋରି ପରି ଡରୁଥିଲେ ? ଆମ ଗାଁ ପଦିଆ ପିଚେଇ ପ୍ରେମ କରୁ କରୁ ଯୋଉ କାଣ୍ଡମାନ କରିଦେଲେ ସେଥିରେ ତ ଆମ ଆଖପାଖ ପାଞ୍ଚଖଣ୍ଡ ଗାଁରେ ହୁଲୁସ୍ଥୁଲ ପଡିଗଲା । ତୋର ଏତେ ଡର କାହିଁକି ? ତୁ କଣ ଆମ ଗାଁ ପଦିଆ ଭଣ୍ଡାରୀଠୁଁ ବି ହୀନ ?

ବଙ୍କେ - ହେଁଃ ହେଁଃ ହେଁଃ- ନାଇଁ ନାଇଁ ତା ନୁହେଁ ଯେ- ତା ନୁହେଁ ଯେ-

ସୋମୁ - ମୁଁ ଜାଣିଚି ତୁ କୋଉଥିପାଇଁ ଏମିତି ମଁ ମଁ ହଉଚୁ । ପୋଲିସ ପାଇଁ । ନାଇଁ ? ଆବେ ତାଙ୍କ ବାପା କଣ ସାଙ୍ଗେ ସାଙ୍ଗେ ପୋଲିସକୁ ତମ ପଛରେ ଲଗେଇ ଦେବେ ? ଆଗ ନିଜେ ଖୋଜିବେ । ନ ପାଇଲେ ପୋଲିସ୍ ପାଖକୁ ଯିବେ । ସେତେବେଳକୁ ତ ତମେ ଦିହେଁ ଯାଇ କ୍ୱାଡେ ନାହିଁ କ୍ୱାଡେ ଉଠିବଣି ! ମନ୍ଦିର ଫନ୍ଦିରଟେ ଦେଖି ବାହା ବି ହେଇ ସାରିବଣି । ପୋଲିସ ତମର କୋଉ ଟେର୍ ପାଇବ ନା ପାଇଲେ ବି କିଛି କରି ପାରିବ ?

ବଙ୍କେ - ଠିକ୍ କଥା- ଠିକ୍ କଥା । ଆମେ ସେୟା କରିବୁଁ- ତେବେ- ତେବେ କଥାଟା କଣ କି - କଥାଟା କଣ କି -

ସୋମୁ - ବଙ୍କୁ ! ମୁଁ ଯାହା ଦେଖୁଚି ଶେଷରେ ତୋ ଭାଗ୍ୟରେ ସେଇ କାଙ୍ଗୀ ଆଉ ମୋଟୀ । ତୋର ଆଉ ଅନ୍ୟ ଗତି ନାହିଁ ।

ବଙ୍କେ - ମୁଁ କାହିଁକି ସେ କାଙ୍ଗୀ ମୋଟୀ ଝିଅଟାକୁ ବାହା ହେବି ହୋ ?

ସୋମୁ - ହବୁ ନାହିଁ ତ କଥାଟା କଣ କି କଥାଟା କଣ କି ହଉଚୁ କାହିଁକି ? ସଫା ସଫା କହିଦଉନୁ ନେଇ ଚାଲିଯିବି ବୋଲି ? କଥା ସରନ୍ତା ।

ବଙ୍କେ - କହିଲି ପରା ।

ସୋମୁ - କେତେବେଳେ କହିଲୁ ପରା ? ନେଇ ଚାଲିଯିବା କଥା ଶୁଣି ଦେଇ ତ ତତେ କମ୍ପ ହେଇ ଜର ମାଡି ବସିଲାଣି ।

ବଙ୍କେ - ମୋତେ କାହିଁକି କମ୍ପ ହେଇ ଜର ହବ ହୋ ? ମୁଁ ତ ଏକଦମ୍ ଦମ୍ଭରେ ଅଛି । ଦେଖିବୁ ନେଇ ପଳେଇବି କି ନାହିଁ ।

ସୋମୁ- ସତରେ ନେଇ ପଳେଇବୁ ?

ବଙ୍କେ- ତୁ ଦେଖ୍ ।

ସୋମୁ - ସତ କହୁଚୁ ନେଇ ପଳେଇବୁ ?

ବଙ୍କେ - (କିଂଚିତ୍ ଉଚ୍ଚ ସ୍ୱରରେ) ତୁ ଦେଖ୍ ।

ସୋମୁ - Very Good । ଏଥର ଜଣା ପଡିଲା ତୁ ଗୋଟେ ସଚ୍ଚା ପ୍ରେମିକ ଅଛୁ । ଠିକ୍ ଅଛି । ଏଥର ସୁଶ୍ରୀ ଦେବୀଙ୍କ ସାଙ୍ଗରେ ତୋର କଥାବାର୍ତ୍ତା ହେଇ ସବୁ ଠିକ୍ ହେଇଯିବା କଥା - କେବେ ଯିବ କେତେବେଳେ ଯିବ କେମିତି ଯିବ କୋଉଠିକି ଯିବ କୋଉଠି ରହିବ ଇତ୍ୟାଦି ଇତ୍ୟାଦି । ମୁଁ ତାକୁ ବୁଝାବୁଝି କରି ଏ ଭିତରେ

ତୋ ସାଙ୍ଗରେ ଗୁପ୍ତରେ ଦେଖା କରେଇ ଦେବି । ପଳେଇ ଯିବା କଥାଟା ଟିକେ hint ଦେଇ ଦେଇଥିବି । ତୁ ତାଙ୍କୁ କହିଲେ ସେ ରାଜୀ ହେଇଯିବେ ।

ବକ୍ରେ - ମୁଁ ? ମାନେ ମୁଁ ତାଙ୍କୁ... ? ହେଇଟି ସୋମୁ ତୁ ଟିକେ ତାଙ୍କୁ କହି ଦିଅନ୍ତୁ ନାହିଁ ?

ସୋମୁ - ଆବେ ବୁଡବକ୍ ! ଏମିତିକା ଗୁପ୍ତ କଥାସବୁ ପ୍ରେମିକ ନିଜେ ପ୍ରେମିକାକୁ କହେ ନା ସାଇଭାଇ କହନ୍ତି ? ମୁଁ ଯାଇ ଗୋଟେ ଝିଅକୁ କହିବି ତୁ ଅମୁକ ସାଙ୍ଗରେ ଘର ଛାଡି ପଳା- ସେ ପଳେଇବ ?

ବକ୍ରେ - ତାହେଲେ ତୁ କହୁତୁ ମୁଁ ତାଙ୍କୁ କହିବି ?

ସୋମୁ - ତୁ ନ କହ । ସେ ନ ଯାନ୍ତୁ । ଏଇଠି ଘାଣ୍ଟି ହଉଥା ।

ବକ୍ରେ - ନାଇଁ... ନାଇଁ କହିବି କହିବି । ନିଶ୍ଚେ କହିବି । ତୁ ତ ଖାଲି ଚଟ୍‌କିନା ରାଗି ଯାଉଚୁ ।

ସୋମୁ - ଆଚ୍ଛା ହଉ ତା ହେଲେ ଠିକ୍ ଅଛି- ମୁଁ ଯାଉଚି । କଥାବାର୍ତ୍ତା କରି ତୋତେ ଖବର ଦେବି । ତୁ ପ୍ରସ୍ତୁତ ହେଇ ଥା । ହେଲା ? କିନ୍ତୁ ହୁସିଆର୍ ! ଅସଲ ବେଳକୁ ଯେମିତି ଡରରେ ତୋର ବଡପାସ୍ ହେଇ ନଯାଏ । (ଚାଲିଗଲା)

ବକ୍ରେ - ହୁଁଃ ! କି ଝମେଲା ! କ୍ୱାଡେ ନାଇଁ କ୍ୱାଡେ ପଳେଇବ । ନ ହେଲେ ପୋଲିସ୍ ଧରି ପକେଇବ । ହାଜତ୍‌ରେ ପୂରେଇଦବ ।

ପୁର - (ଆସିଛି) ସାର୍ ! ସୋମୁବାବୁ ଗଲେଣି ? ସିଏ କୋଉ ସୁଶୀଳ ମାଳତୀଙ୍କ କଥା କହୁଥିଲେ । ସେ ସୁଶୀଳମାଳତୀଟି ପୁଣି କିଏ କି ?

ବକ୍ରେ - ତୋର ସେଥିରେ କଣ ଅଛି ?

ପୁର - ହର୍ଷବାଲାଙ୍କ କଥା ମନେ ଅଛିଟି ? ସିଏ ପରା ତାଗିଦ୍ କରିଛନ୍ତି ଅନ୍ୟ କୌଣସି ଝିଅପିଅ ସାଙ୍ଗରେ ନ ମିଶିବାକୁ ।

ବକ୍ରେ - ମାର୍ ଗୁଲି ତୋ ହର୍ଷବାଲାକୁ । ମିଶିବି ନାହିଁ ଆଉ କଣ ତାର ସେ କାଳୀ ମୋଟି ଝିଅଟାକୁ ବାହା ହେବି- ତା ଇଚ୍ଛା ଅନୁସାରେ ? ଜରୁର୍ ମିଶିବି ।

ପୁର - ଜରୁର୍ ମିଶିବେ ? ମିଶୁଥାନ୍ତୁ । ମକଦ୍ଦମା ହଉ । ଆପଣ ପରା ସେଇ କାଳୀ ମୋଟୀ ଝିଅଟାକୁ ବାହା ହେବେ ବୋଲି କଣଟି ତା ନାଁ- ଅପ୍ରେସନ ଏକାଅଣୀ କେଜି କରୁଚନ୍ତି ।

ବକ୍ରେ - ସେ ଅପ୍ରେସନ ଏକାଅଣୀ କେଜି ଆଜିଠୁଁ କାନସଲ୍ ।

ପୁର - କଥାଟା ଯଦି ହର୍ଷବାଲାବାବୁ ଜାଣନ୍ତି ?

ବକ୍ରେ - ସେ ହର୍ଷବାଲାବାବୁ ବି କ୍ୟାନସଲ୍ ।

ପୁର - ତାଙ୍କ କାଳୀ ମୋଟୀ ଝିଅ ?

ବକ୍ରେ - ସେ ବି କ୍ୟାନସଲ୍ । ସମସ୍ତେ କ୍ୟାନସଲ୍ । ଯାନେ ଦୋ- (ବାହାରେ ଠକ୍ ଠକ୍ ଶବ୍ଦ) କିଏ ?

କୀଚକ - (ବାହାରେ) ଖୋଲ ।
ବକ୍ରେ - କାହିଁକି ? କଣ କାମ ! ତମେ ବି କ୍ୟାନ୍‌ସଲ୍ । ପଳା ।
କୀଚକ - (ବାହାରେ ସ୍ୱରରେ ଜୋର୍ ଦେଇ) ଜଲ୍‌ଦି ଖୋଲ ।
ପୁର - (ହଠାତ୍ ସତର୍କ) ସାର୍ ! ସ୍ୱରଟା ଭାରି କଡା କଡା ଶୁଭୁଚି । ସେଇ ହର୍ଷବାଲା ପରି ଲାଗୁଚି । ତାଙ୍କ କଥା ପଡୁ ପଡୁ ଆସି ହାଜର୍ । ସେଇ ସୁଶୀଳ ମାଳତୀ ଝିଅ କଥା ଜାଣିଗଲେ କି ? ଆପଣ ଚୁପ୍‌ଚାପ୍ ଭିତରକୁ ପଳାନ୍ତୁ । ମୁଁ ଦେଖୁଚି । (ବକ୍ରେଶ୍ୱର ଭିତରକୁ ଚାଲିଗଲା । କବାଟରେ ଠକ୍ ଠକ୍ ଶବ୍ଦ) ହଁ... ହଁ... ଖୋଲୁଚି । (ଖୋଲି ଦେଲା) ଆଜ୍ଞା ! ଆପଣ ? ଜୁହାର ଜୁହାର ଆସନ୍ତୁ ଭିତରକୁ ଆସନ୍ତୁ ।
କୀଚକ - (ପୁରନ୍ଦର କଥା ଭିତରେ ଭିତରକୁ ମାଡି ଆସିଲେ) ଡାକ୍ ।
ପୁର - ଡାକିବି ? କାହାକୁ ଆଜ୍ଞା ?
କୀଚକ - ଡାକ୍ ପରା କହୁଚି ।
ପୁର - ଆଜ୍ଞା କାହାକୁ ଡାକିବି ?
କୀଚକ - ପ୍ରଭୁଙ୍କୁ !
ପୁର - (ବୁଝି ନ ପାରି) ପ୍ରଭୁଙ୍କୁ ? ତାଙ୍କୁ କାହିଁକି ଆଜ୍ଞା ଡାକିବି ?
କୀଚକ - ଜଲ୍‌ଦି ନ ଡାକିଲେ ପ୍ରଭୁଙ୍କ ଛଡା ଆଉ କେହି ତମକୁ ରକ୍ଷା କରି ପାରିବେ ନାହିଁ ।
ପୁର - ଆଜ୍ଞା ସାର୍ ତ... ନାହାଁନ୍ତି ।
କୀଚକ - ଅଛନ୍ତି । ଭିତରେ ଲୁଚିଚନ୍ତି । ଜଲ୍‌ଦି ଡାକ୍ । (ପାଟିକରି) ଡାକ୍ ।
ପୁର - ଡାକୁଚି ଆଜ୍ଞା ଡାକୁଚି । (ବକ୍ରେଶ୍ୱର ଉଦ୍ଦେଶ୍ୟରେ) ସାର୍ ! ହର୍ଷବାଲା ଆଜ୍ଞା ଡାକୁଚନ୍ତି ।
ବକ୍ରେ - (ଭିତରୁ କିଛିଟା ଭୟ ସହ) ମୋତେ ? ହଉ ଯାଉଚି । (ଆସିଛି କିଛିଟା ଶଙ୍କିତ । ଗତି ସେଇ ଅନୁସାରେ ପ୍ରଭାବିତ) ।
କୀଚକ - ତମ ସାର୍ ତ ଖଲିଆ ବଳଦ ପରି ଡିପଉଛନ୍ତି । ଜଲ୍‌ଦି ଆସିବେ କେମିତି ? ଭଲ କରି ଚାଲି ବି ଆସୁ ନାହିଁ ? ପୁରନ୍ଦର ! ସାର୍‌ଙ୍କ ପେଣ୍ଟ ଜାମା କେବେ ଇସ୍ତ୍ରୀ ହେଉଥିଲା ? ଯୋତାରେ କେବେ ରଙ୍ଗ ମରା ହେଉଥିଲା ?
ପୁର - ଆଜ୍ଞା କାଲି ।
କୀଚକ - Shut up ! ଭଲ କରି ଚାଲି ଆସୁ ନାହିଁ । ପେଣ୍ଟ ଜାମା ଅପରିଷ୍କାର । ଯୋତା ଅପରିଷ୍କାର । ପୁରନ୍ଦର ! ତମର ନିଶ୍ଚେ କୋର୍ଟ ମାର୍ସିଆଲ ହେବ । ତମ ସାର୍‌ଙ୍କର ବି । କଣ କୁକୁଡା ଖାଦ୍ୟ ଖିଆ ହଉଚି ? ଓଜନ କେତେ ବଢିଲା ?
ବକ୍ରେ - ଆଜ୍ଞା ବଢିଚି ଯେ ... ବଢିଚି ଯେ ...
କୀଚକ - କେତେ ବଢିଚି ଯେ ? ତମେ ଯୋଉ ଗତିରେ ଚାଲୁଚ ବୟାଅଣୀ କେଭି

ହବାକୁ ତୁମକୁ ତ ବୟାଅଶୀ ବର୍ଷ ଲାଗିଯିବ । ଗୋଟେ ଲୋକ ପଠେଇ ତମକୁ ମଝିରେ ମଝିରେ ଜଗିବାକୁ ପଡିବ ଦେଖୁଚି । ଆଚ୍ଛା ସେ ଦିନ ପୃଷ୍ଟିବାବୁଙ୍କ ବାହାଘରରେ ଯୋଉ ଝିଅଟା ସାଙ୍ଗରେ ଏତେ ଗପସପ ହସାହସି ଟୁପୁରୁ ଟାପର ଚାଲିଥିଲା ସେ ଝିଅଟା କିଏ ?

ବକ୍ରେ - ଆଚ୍ଛା ସେ ଝିଅଟା ମାନେ ସେ ଝିଅଟା-

କୀଚକ - (ସ୍ୱର ସାମାନ୍ୟ ଉଚ୍ଚ କରି) ମୁଁ ପଚାରୁଚି କିଏ ସେ ଝିଅଟା । ଅନ୍ୟ କୌଣସି ଝିଅ ସାଙ୍ଗରେ ହସଖୁସି ଗପସପ କରିବାକୁ ମନାଥିଲା । ଥିଲା ନା ନାହିଁ ?

ବକ୍ରେ - ହେଁଃ ହେଁଃ ହେଁଃ- ଥିଲା ଯେ - ଥିଲା ଯେ ହଠାତ୍ ସେଠି ତାଙ୍କ ସାଙ୍ଗରେ ଦେଖା ହେଇ ଗଲା ତ ... ।

କୀଚକ - ତାକୁ କଣ ତମେ ଆଗରୁ ଚିହ୍ନିଥିଲ ?

ବକ୍ରେ - ହେଁଃ ହେଁଃ ହେଁଃ- ନାଇଁ ମାନେ ଚିହ୍ନି ନ ଥିଲି ଯେ କଥାଟା କଣ କି-

କୀଚକ - (ମଝିରେ) କଥା କିଛି ନୁହେଁ । ଖାଲି ଯୌତୁକ ଲୋଭ । ସେଇଥି ପାଇଁ ଆଜି ଏ ଝିଅକୁ ଦେଖ । କାଲି ସେ ଝିଅକୁ ଦେଖ । କଣ ନା ହଠାତ୍ ଦେଖା ହୋଇଗଲା । ହଉ ଯାହା ହବାର ହେଇଗଲାଣି । ଆଉ ଯେମିତି ଥରେ ବି ସେମିତି ନ ହୁଏ । ପୁରନ୍ଦର ! ତମେ ବି ହୁସିଆର୍ । ତମେ ତମ କାମରେ ଖିଲାପ କରୁଚ । ନ ହେଲେ ତମ ସାର୍‌ଙ୍କ ଓଜନ ବଢୁନାହିଁ କାହିଁକି ? ତମର ସେ ଅପରେସନ ଏକାଅଶୀ କେଜି ଚାଲୁଚି ନା ବନ୍ଦ ହେଲାଣି ?

ପୁର - ଆଜ୍ଞା ସେଟା ତ ଆଜିଠୁଁ -

ବକ୍ରେ - (ତା ପାଟିକୁ ଚାପି ଧରି) ନାଇଁ ନାଇଁ ଚାଲିଚି ଚାଲିଚି ।

କୀଚକ - କେମିତି ଚାଲିଚି ? ତମେ ଯେମିତି ଖଲିଆ ବଳଦ ପରି ଚାଲୁଚ ସେମିତି ଚାଲିଚି ? ହଉ ଠିକ୍ ଅଛି । ଚାଲୁ । ମୁଁ ପୁଣି ପନ୍ଦର ଦିନ ପରେ ଆସିବି । ତା ଭିତରେ ତମ ଓଜନ ଅନ୍ତତଃ ପାଞ୍ଚ କେଜି ବଢିଥାଏ ଯେମିତି । ନ ହେଲେ ତମ ଦିଜଣ ଯାକୁ କୋର୍ଟ ମାର୍ସାଲ । ପିଠିରେ ପଚିଶ କେଜି ବୋହି ପାଞ୍ଚ କିଲୋମିଟର ଦଉଡ । (ହଠାତ୍ ପାଟିକରି) ଆଟେନ୍ ... ସନ୍ ... (ବକ୍ରେଶ୍ୱର ଓ ପୁରନ୍ଦର ଆଟେନ୍‌ସନ୍ ଭଙ୍ଗୀରେ ଛିଡ଼ା ହୋଇଗଲେ)। ସା... ଲ୍ୟୁଟ୍ ... । (ବକ୍ରେଶ୍ୱର ଓ ପୁରନ୍ଦର ସାଲ୍ୟୁଟ କଲେ । କୀଚକେଶ୍ୱର ଟେବୁଲ୍‌ରେ ବାଡ଼ିକୁ ପିଟି ଚାଲିଗଲେ)

ପୁର - (ସେ ଗଲାପରେ ନିଃଶ୍ୱାସ ମାରି) ସାର୍ ! ଆପଣ କହୁଚନ୍ତି କ୍ୟାନସଲ ଆଜ୍ଞା କହୁଚନ୍ତି- ତାହେଲେ ସାର୍ ମୁଁ ବଜାରକୁ ଯାଇ ଅପ୍ରେସନ ଏକାଅଶୀ କେଜି ଜିନିଷ କିଣି ଆଣିବି ? ମୋତେ କିନ୍ତୁ ସାର୍ ଭାରି ଡର ମାଡୁଚି । କି ସ୍ୱର କି ନିଶ କି ଠେଙ୍ଗିଣୀ ଲୋ ବାବା ! ପୁଣି ପନ୍ଦର ଦିନ ପରେ ଆସିବେ ବୋଲି କହିଚନ୍ତି । ପଚିଶ କେଜି ଭଟା ପାଞ୍ଚ କିଲୋମିଟର ଦୌଡ । ମୁଁ ପାରେନାହିଁ

ଲୋ ବାବା ! (ଚାଲିଗଲା)

ବକ୍ରେ - ଧୁତ୍ ତେରି ! ଯାହା କଲାବେଳକୁ ତ ସବୁ ଗଣ୍ଡଗୋଳିଆ ଧରି ଯାଉଚି । (ଫୋନ୍ ବାଜିଲା । ଫୋନ ଉଠେଇ) ହଁ ... କିଏ ... ସୋମୁ ? ... କଥାଟା ଶୁଣେଇ ଦେଇଚୁ ? ...ନା ନା ନା ମୁଁ କହିବି ମୁଁ କହିବି-ଗୌରହରି ଗୌରହରି... ନା ନା ନା ଗୌରହରି କେହି ନୁହେଁ ଗୌରହରି କେହି ନୁହେଁ ଯେ କଥାଗୁଡ଼ା ସବୁ ଗଣ୍ଡଗୋଳିଆ ଧରି ଯାଉଚି ତ... ଦେଖା ଦେଖି ପାଇଁ ବନ୍ଦୋବସ୍ତ କରୁଚୁ ? ଦଶ ପନ୍ଦର ଦିନ ପରେ ? ..... ଏଇ ଭିତରେ ? .... ତୋ ଘରେ ? .... ଆମ ଘରେ ? ମାନେ ଆମ ଘରେ ? ......... ନାଇଁ ନାଇଁ ମୁଁ ଡ଼ରୁ ନାହିଁ ଡ଼ରୁ ନାହିଁ ହଁ ହଁ ଆମ ଘରେ ........ ନାଇଁ ନାଇଁ ମୁଁ କହିବି କହିବି ..... ପଅରଦିନ ? ହଉ ହଉ ହଉ ........ ନାଇଁ ନାଇଁ ମୁଁ କାହାରିକି କିଛି କହିବି ନାହିଁ କହିବି ନାହିଁ ......... (ସ୍ୱର କମେଇ କଥାବାର୍ତ୍ତା କରିବା ମଝିରେ ଲିଲି ଆସିଛି । ତାକୁ ଘର ଭିତରେ ଖୋଜି ନ ପାଇ ଆସି ଦେଖିଛି ବକ୍ରେଶ୍ୱର ଫୋନ୍‌ରେ ଭାରି ମଗ୍ନ)

ଲିଲି - (ପାଖରେ ବସି ପଡ଼ି କିଛି ସମୟ ବକ୍ରେଶ୍ୱରକୁ ଲକ୍ଷ୍ୟ କରି) ବକୁ ! ବକୁ !

ବକ୍ରେ - (ଲିଲିର କଥା ବୋଲି ଜାଣି ପାରି ନାହିଁ) କହୁନଉଁ କଣ କହୁଚୁ ? ବକୁ ବକୁ କାହିଁକି ହଉଚୁ ।

ଲିଲି - ବକୁ !

ବକ୍ରେ - ସୋମୁ ! ତୋ ସ୍ୱର କାହିଁକି ଏମିତି ଶୁଭୁଚି କିବେ ? ସେଠି ଆଉ କିଏ ଅଛି କି ?

ଲିଲି - (ସ୍ୱର ଉଚ କରି) ବକୁ !

ବକ୍ରେ - (ଏଥର ଜାଣିପାରିଲା) ଏଁ ! କିଏ ? (ହଠାତ୍ ଲିଲିକୁ ଦେଖି ପକେଇ ଭାରି ଖୁସିଟେ ହୋଇ) ଆଲୋ ଅପା କି ଲୋ - ମୁଁ କହୁଚି - ଆ ଆ ଆ ଏଇଠି ବସ - ଏଇଠି ବସ -

ଲିଲି - (ସୋଫାରେ ବସିପଡ଼ି) କାହା ସାଙ୍ଗରେ କଥା ହଉଥିଲୁ କିରେ ?

ବକ୍ରେ - (ଭାରି ଖୁସି ସ୍ୱରରେ) ଅପା ଲୋ ହେଇଗଲା - ହେଇଗଲା -

ଲିଲି - କଣ ହେଇଗଲା ?

ବକ୍ରେ - କଣ ହେଇଗଲା ବୁଝି ପାରୁନଉଁ ? ସେଇ କଥା । ହେଇଗଲା -

ଲିଲି - (ଭାରି ଖୁସି) ସତରେ ? ଯାହାହଉ ! କୋଉଠି ହେଇଗଲା ? (ସ୍ୱର କମେଇ ହସି ହସି) ଓଜନ କେତେ ?

ବକ୍ରେ - ନାଇଁ ନାଇଁ ଲୋ ଅପା ହେଇନାହିଁ ହେଇନାହିଁ -

ଲିଲି - ହେଇନାହିଁ ? କଣ ହେଇଗଲା ପୁଣି ହେଇନାହିଁ - ?

ବକ୍ରେ - ହବ ହବ - ସୋମୁ ଘରେ । ପନ୍ଦର ଦିନ ପରେ ।

ଲିଲି - ସୋମୁ ଘରେ ? ପନ୍ଦର ଦିନ ପରେ ?

ବକ୍ରେ - ନାଇଁ ନାଇଁ ଏଇଠି ଏଇଠି ଦିଦିନ ପରେ ।

ଲିଲି - କଣ ହେଇଗଲା - ହେଉନାହିଁ - ସୋମୁଘରେ - ପନ୍ଦରଦିନ ପରେ - ପୁଣି ଏଇଠି ଦିଦିନ ପରେ - ମୁଁ ତ ତୋ କଥା କିଛି ବୁଝିପାରୁନାହିଁ । ତୋ କଥା ହବ ନାହିଁ । ମୁଁ ପୁରନ୍ଦରକୁ ଡ଼ାକେ । (ଡ଼ାକିଲା) ପୁରନ୍ଦର ! ପୁରନ୍ଦର -

ବକ୍ରେ - (ତରତର ହୋଇ) ନାଇଁ ନାଇଁ ଲୋ ଅପା ଭାରି ଗୁପ୍ତ କଥା ଭାରି ଗୁପ୍ତ କଥା - କେହି ଜାଣିନାହାଁନ୍ତି ।

ଲିଲି - ସତ କହୁଚୁ ? ହଉ ଦେଲୁ ଦେଲୁ ତୋ କାନଟାକୁ ମୁଁ ଆଗ ମୋଡ଼େ । ମୋତେ ସେ ଦିନ ଘଡ଼ିଏ କାଳ ନେହିଁ ନେହିଁ କରି ଏ ଭିତରେ ନିଜେ ନିଜେ ଠିକଣା କରି ସାରିଲୁଣି ? ହଉ ଠିକ୍ ଅଛି । ମୁଁ ଯାଏ ଖୁଡ଼ୀଙ୍କୁ କଥାଟା ଫୋନ୍‌ରେ କହି ଦିଏଁ - (ବାହାରିଲା ଯିବାକୁ)

ବକ୍ରେ - ହଉ ଯା ଯା (ଭୁଲ ବୁଝିପାରି) ନାଇଁ ନାଇଁ କହନା କହନା - ଆମର ପରା କଥାଟା ପୂରା ପାଇନାଲ୍ ହେଉନାହିଁ ।

ଲିଲି - ଫାଇନାଲ୍ ହେଇନାହିଁ ? କେବେ ହବ ? ହେଲେ ମତେ କହିବୁଟି ?

ବକ୍ରେ - ତତେ କହିବି ନାହିଁ ? ତୁ ପରା ଝିଅର ଓଜନ ନବୁ । ନ ହେଲେ ବାହାଘର ହବ କେମିତି !

(ଉଭୟେ ଜୋର୍‌ରେ ହସିଉଠିଲେ)

## ପଞ୍ଚମ

(ଦୁଇ ଦିନ ପରେ । ବକ୍ରେଶ୍ୱରର ଡ୍ରଇଂ ରୁମ ସମୟ ପ୍ରାୟ ଅପରାହ୍ନ ପାଞ୍ଚଟା)

ସୁଶୀ - (ଭିତରକୁ ସର୍ନ୍ତପଣରେ ଆସିଲା । ରୁମ୍‌ରେ କେହି ନ ଥିବାର ଦେଖି ଭିତରକୁ ଟିକେ ଚାହିଁଲା ତାପରେ ଆସି ସୋଫାରେ ବସୁଥିଲା ହଠାତ୍ ଚାଲିଯାଇ କବାଟ ପରଦା ଟେକି ବାହାରକୁ ଟିକେ ଚାହିଁଲା । ତାପରେ ଭିତରକୁ ଫେରି ଆସିଲା)

ବକ୍ରେ - (ସୁଶୀଲାର ଆସିବା କଥା ଜାଣିନାହିଁ । ପଶିଆସି ସୁଶୀଲାକୁ ଦେଖି ଭାରି କୃତକୃତ୍ୟ ଭାବ) ହେଁଃ ହେଁଃ ହେଁଃ- ଏତେ ବାଟ - ଆପଣଙ୍କୁ ଆସିବାକୁ ଭାରି କଷ୍ଟ ହେଇଥିବ ।

ସୁଶୀ - କଷ୍ଟ ଆଉ କଣ ? କିଛି ନାହିଁ । ଚୁପ୍‌ଚାପ୍ ରିକ୍ସାଟିଏ କରିଦେଲି । ଚାଲି ଆସିଲି । ବରଂ ଆପଣଙ୍କୁ କଷ୍ଟ ହେଇଥିବ ଅପେକ୍ଷା କରିବାରେ ।

ବକ୍ରେ - ନା... ନା- କିଛି କଷ୍ଟ ନାହିଁ- କିଛି କଷ୍ଟ ନାହିଁ । ମାନେ କଥାଟା କଣ କି

| | |
|---|---|
| | ଅନେକ ଦିନ ପରେ ଦେଖା ହଉଚି ତ ଭାରି ଖୁସି ଲାଗିଲା । |
| ସୁଶୀ - | ଖୁସି ଲାଗିଲା ? ସତରେ ? |
| ବକ୍ରେ - | ହେଁଃ ହେଁଃ ହେଁଃ- ମୁଁ ସୋମୁକୁ କେତେ ଥର କହିଲିଣି କେମିତି ଟିକେ ଦେଖା ହୁଅନ୍ତା ବୋଲି । ଏଇ କାଲି କହିଲା- ହେଁଃ ହେଁଃ ହେଁଃ- ସୁଶୀ ଦେବୀ ! ଆପଣ ତ ଏକଦମ୍ ଚୁପ୍‌ଚାପ ଆସିଲେ । କେହି କିଛି ଜାଣି ନଥିବେ । ନାଇଁ ? |
| ସୁଶୀ - | ଆଉ ଯିଏ ଜାଣୁ ନ ଜାଣୁ ବାପା ଯଦି ଜାଣିଯାଇଥାନ୍ତେ ନା ରାଗିମାଗି ଏକଦମ୍ ମୁଣ୍ଡେଜ ହେଇ ଯାଇଥାନ୍ତେ । ଭାରି ରାଗୀ ଲୋକ ତ । |
| ବକ୍ରେ - | ଭାରି ରାଗୀ ଲୋକ ତ ? |
| ସୁଶୀ - | ହଁ ବକ୍ରୁବାବୁ ଭାରି ରାଗୀ ଲୋକ । |
| ବକ୍ରେ - | ତା ହେଲେ ତ ବିପଦ ! |
| ସୁଶୀ - | ହଁ ଭାରି ବିପଦ । |
| ବକ୍ରେ - | (ଭୟ ପଶିଗଲାଣି) ଭାରି ବିପଦ ? (କଥାବାର୍ତ୍ତା ମଝିରେ ମଝିରେ ଦାଣ କବାଟ ଓ ଝରକା ଦେଇ ବାହାରକୁ ଦେଖୁଥିଲା) |
| ସୁଶୀ - | ଏଇ ବିପଦ କଥାରୁ ମନେ ପଡିଗଲା- ଆଚ୍ଛା ବକ୍ରୁବାବୁ । ଆପଣ ସେ ଦିନ ପୃଷ୍ଟିବାବୁଙ୍କ ବାହାଘରରୁ କଣ ଗୋଟେ ବିପଦ ହେଇଯାଇଚି ବୋଲି କହି ହଠାତ୍ ଚାଲିଆସିଲେ । ଏଠିବି କବାଟରୁ ଝରକା ଝରକାରୁ କବାଟ ହଉଛନ୍ତି । ଏଠି ବି କଣ ବିପଦ ଅଛି ନା କଣ ? |
| ବକ୍ରେ - | ହେଁଃ ହେଁଃ ହେଁଃ- ନାଇଁ ଯେ... ନାଇଁ ଯେ ତେବେ କଥାଟା କଣ କି ବିପଦଟା କେତେବେଳେ ଯେ କୋଉଠି ଆସି ପହଞ୍ଚିଯିବ ତାର କିଛି ଠିକଣା ନାହିଁତ । ସେଠିକି ଆସିଗଲା । ଏଠିକି ବି ଆସି ଯାଇପାରେ । ହେଁଃ ହେଁଃ ହେଁଃ- ସୁଶୀ ଦେବୀ ! ଦାଣକବାଟଟା ବନ୍ଦ କରିଦବା କି ? ରାସ୍ତାରେ ବହୁତ ବୁଲାରୀ ଗୋରୁଗାଈ ଷଣ୍ଢ କୁକୁର ଛେଳି ମେଣ୍ଢା ଢ଼େଙ୍ଗା ଲୋକ ନିଶୁଆ ଲୋକ ବି ବୁଲୁଛନ୍ତି ତ । |
| ସୁଶୀ - | ନାଇଁ... ନାଇଁ... କେହି ପଶିବେ ନାହିଁ । ଆପଣ ଡରନ୍ତୁ ନାହିଁ । କବାଟ ଆଉଜା ଥାଉ । |
| ବକ୍ରେ - | ଥିବ ? ହଉ ଥାଉ । ତେବେ ସୁଶୀ ଦେବୀ ଆପଣ ଆସିଲାବେଳେ ଦେଖିଲେ କି ମୋଟା ହେଇ ତେଙ୍ଗା ଏଢେ ଏଢେ ନିଶ ହାତରେ ଠେଙ୍ଗିଣୀଟେ ଧରିଚି ଗୁଣ୍ଡାଫୁଣ୍ଡା ପରି ଗୋଟେ ଲୋକ ଆପଣଙ୍କ ପଛେ ପଛେ କି ପାଖେ ପାଖେ ଆସୁଥିଲା କି ଆପଣଙ୍କୁ ଦେଖିଲା କି ଏଠିକି ଆସିବାର ? |
| ସୁଶୀ - | କେତେ ମୋଟା ତେଙ୍ଗା ନିଶୁଆ ଲୋକ ତ ରାସ୍ତାରେ ଦେଖିଲି । କିନ୍ତୁ ଏ ଲୋକଟା କଥା କାହିଁକି ପଚାରୁଚନ୍ତି ? କଣ ଡକାୟତ ଫକାୟତ ନା କଣ ? |
| ବକ୍ରେ - | ନାଇଁ... ନାଇଁ, ଡକାୟତ ଫକାୟତ କିଛି ନୁହେଁ ଯେ ମନା ଥିଲା ତ । |

ସୁଶ୍ରୀ - 	ମନା ଥିଲା ତ ? କଣ ମନା ଥିଲା ତ ?

ବକ୍ରେ - 	ଦେଖା କରିବା । ଧରା ପଡିଲେ ଛଅବର୍ଷ । ଏଣେ ଛଅ ମାସ ହେଇ ହେଇ ଆସୁଚି । ତେଣେ କେଜି କେଜି ଜିନିଷ । ତା ସାଙ୍ଗକୁ ଘୋର କାଳୀ ଆଉ ମୋଟୀ । ପୁଣି ଏତେ ଏତେ ନିଶ ।

ସୁଶ୍ରୀ - 	କି ମୁସ୍କିଲ୍ ! କାଳୀ ମୋଟୀ ଝିଅର ଏତେ ଏତେ ନିଶ ?

ବକ୍ରେ - 	ଝିଅର ହଉ କି ବାପର ହଉ ଫଳ ସମାନ । ଏଣେ ବାପର ଠେଙ୍ଗିଣୀ ଖେଳ ଚାଲିଚି । ତେଣେ ଏକଚାଳିଶଟା ଏମିତି ଗୋଟେ ବାଜେ ଜିନିଷ ଯେ ସେଥିରେ ଯେତେ ଯାହା ମିଶେଇଲେ ବି ଯୋଉ ଏକଚାଳିଶକୁ ସେଇ ଏକଚାଳିଶ । ସେଟା ବୟାଅଣୀ ହବାକୁ ପାଞ୍ଚ ଲାଗିବ କି ପଚିଶ ଲାଗିବ ସେ କଥା କେବଳ ହର୍ଷବର୍ଦ୍ଧନକୁହିଁ ଜଣା ।

ସୁଶ୍ରୀ- 	ବକ୍ରବାବୁ ! ମୁଁ ତ ଆପଣଙ୍କ କଥା ଜମା କିଛି ବୁଝି ପାରୁନାହିଁ । ମୋଟା ହେଇ ଡେଙ୍ଗା ଏତେ ଏତେ ନିଶ ଠେଙ୍ଗିଣୀ ଖେଳ ଏକଚାଳିଶଟା ଗୋଟେ ବାଜେ ଜିନିଷ କେଜି କେଜି ଜିନିଷ ପାଂଚ ଲାଗିବ କି ପଚିଶ ଲାଗିବ ହର୍ଷବର୍ଦ୍ଧନ ଜାଣିଥିବେ- ଏଟା କଣ ଗୋଟେ କ୍ୱିଜ୍ ପ୍ୱିଜ୍ କିଛି ?

ବକ୍ରେ - 	ସୁଶ୍ରୀ ଦେବୀ ! ମୁଁ କଣ କହୁଥିଲି କି - ନାଇଁ ମାନେ ସୋମୁ- ସୋମୁ ଆପଣଙ୍କୁ କିଛି କହି ନାହିଁ ?

ସୁଶ୍ରୀ - 	ନାଇଁ ତ ।

ବକ୍ରେ - 	କିଛି କହି ନାହିଁ ? ଗୋଟେ ନିହାତି ବାଜେ ଲୋକଟେ -

ସୁଶ୍ରୀ - 	ରୁହନ୍ତୁ ମନେ ପକାଏଁ । (ମନେ ପକାଇବାର ଚେଷ୍ଟା କଲା) ହଁ କଣ କହୁଥିଲେ ଆପଣଙ୍କ ଲନ୍ ଘାସ କୁଆଡେ ଭାରି ସୁନ୍ଦର ।

ବକ୍ରେ - 	(ହତାଶ ସ୍ୱରରେ) ଆଉ କିଛି ?

ସୁଶ୍ରୀ - 	ଆଉ ? ଆଉ- ଆଉ କହୁଥିଲେ ଆପଣ କୁଆଡେ ଦିଟା ସୁନ୍ଦର ପେଡିଗ୍ରୀ କୁକୁର କିଣୁଚନ୍ତି ।

ବକ୍ରେ - 	ଧୂତ ତେରି ! ବୁଦ୍ଧବକ୍ ! ଠକି ଦେଲା ।

ସୁଶ୍ରୀ - 	କିଏ ? କୁକୁର ବାଲା ?

ବକ୍ରେ - 	(ଏକ ପ୍ରକାର ସ୍ୱଗତଃ) ଉଁଃ ! ବୁଦ୍ଧବକ୍ଟା ତା ହେଲେ କିଛି କହି ନାହିଁ ? ମାନେ ମୁଁ ନିଜେ- ନିଜେ ସବୁ କଥା କହିବି ? କି ମୁସ୍କିଲ୍ !

ସୁଶ୍ରୀ - 	ମୋତେ କିଛି କହିଲେ ?

ବକ୍ରେ - 	(ଦ୍ୱିଧାଗ୍ରସ୍ତ) ଆପଣଙ୍କୁ ? ହେଁଃ ହେଁଃ ହେଁଃ- ଆପଣଙ୍କୁ- ସୁଶ୍ରୀ ଦେବୀ ଆପଣଙ୍କୁ ଗୋଟେ- ଗୋଟେ କଥା କହିବି ?

ସୁଶ୍ରୀ - 	କହୁ ନାହାନ୍ତି ? କହନ୍ତୁ -

ବକ୍ରେ - 	କହିବି ? କହିବି ? ନାଇଁ- ଆପଣ ରାଗ କରିବେ ।

ସୁଣୀ - ନାଇଁ... ନାଇଁ- ମୁଁ ରାଗ କରିବି କାହିଁକି ? ଆପଣ କହନ୍ତୁ ।

ବକ୍ରେ - ହେଁ... ହେଁ... ହେଁ- ସୁଶୀ ଦେବୀ ମାନେ- ମାନେ ମୁଁ କଣ କହୁଥିଲି କି ଆପଣଙ୍କର- ଆପଣଙ୍କର ଅନେକ ପ୍ରସ୍ତାବ ପଡ଼ିଚି ବୋଲି ଶୁଣିଲି ।

ସୁଣୀ - ମୋର- ଅନେକ ପ୍ରସ୍ତାବ ? ବାହାଘର ପ୍ରସ୍ତାବ ତ ? ହଁ ପଡ଼ିଚି ।

ବକ୍ରେ - ସେଥିରୁ ଗୋଟେ ସାଙ୍ଗେ ସାଙ୍ଗେ ଠିକ୍ ବି ହେଇ ଯାଇପାରେ ?

ସୁଣୀ - ହେଇଯାଇ ପାରେ ।

ବକ୍ରେ - ହେଇଯାଇପାରେ ? ଆପଣ ରାଜି ହେଇଯିବେ ? ଯୋଉଠି ପାରେ ସେଇଠି ?

ସୁଣୀ - ନ ହେଇ ଆଉ ବାଟ କଣ ? ଆମ ବାପା ଯୋଉ ରାଗୀ ଲୋକ ରାଜି ନ ହେଲେ ରାଗିମାଗି ଏକଦମ୍ ମୁଣ୍ଡେଜ ହେଇଯିବେ ।

ବକ୍ରେ - କି ବିପଦ ! ସୋମୁଟା ଗୋଟେ ନିହାତି ବାଜେ ଲୋକଟେ ଦେଖୁଚି ! ମୁଁ ବାରମ୍ବାର କହୁଚି- କିଛି କହୁନାହିଁ ! (କବାଟ ପାଖକୁ ଚାଲିଯାଇ ଟିକେ ବାହାରକୁ ଦେଖି ଦେଇ ଫେରି ଆସିଲା) ହେଁ ହେଁ ହେଁ- ସୁଶୀ ଦେବୀ ! ମୁଁ କଣ କହୁଥିଲି କି- ମାନେ ମାନେ ମୋର ଘୋର କାଳୀ ଆଉ ମୋଟୀ । ଆପଣଙ୍କର ରାଗିମାଗି ମୁଣ୍ଡେଜ୍- ସାଙ୍ଗେ ସାଙ୍ଗେ ହେଇଯାଇପାରେ- ଯୋଉଠି ପାରେ ସେଠି- ଭାରି ବିପଦ ହେଇଗଲାଣି ସୁଶୀ ଦେବୀ କଣ କରାଯିବ କିଛି ବୁଦ୍ଧି ଦିଶୁ ନାହିଁ । ସେଇଥିପାଇଁ ମୁଁ କଣ କହୁଥିଲି କି - ମୁଁ କଣ କହୁଥିଲି କି - ମାନେ - ମାନେ- (ସାହସ ବାନ୍ଧି ହଠାତ୍) ଚାଲନ୍ତୁ ଆମେ ଘର ଛାଡି ପଳେଇବା ।

ସୁଣୀ - ଘର ଛାଡି ପଳେଇବା ? କୁଆଡେ ପଳେଇବା ?

ବକ୍ରେ - ଆମର ଯ୍ୱାଡେ ଇଚ୍ଛା ସ୍ୟାଡେ ପଳେଇବା । ପ୍ରେମିକ ପ୍ରେମିକା ଯେତେ ବେଳେ ଘର ଛାଡି ପଳେଇବାକୁ ବାହାରନ୍ତି ସେତେବେଳେ ସେମାନେ କଣ ଠିକ୍ କରିଥାନ୍ତି କୁଆଡେ ଯିବେ ? ରାତି ଅଧରେ ଲୁଚି ଛପି ବାହାରି ପଡିଲେ- ହୁଟ୍ କିରି ପଳେଇଲେ । ବାସ୍ !

ସୁଣୀ - ଆମେ ହୁଟ୍ କରି ପଳେଇବା ?

ବକ୍ରେ - ସମସ୍ତେ ସେମିତି ପଳାନ୍ତି । ଘରଲୋକ ଯେତେବେଳେ ହଇରାଣ କରନ୍ତି ଆଉ କଣ କରାଯିବ ? ରୋମିଓ ଜୁଲିଏଟ୍ ହୀର ରଞ୍ଝା ପଦିଆ ପୀତେଇ ଇତ୍ୟାଦି ଇତ୍ୟାଦିଙ୍କ କଥା ଆପଣ ଶୁଣି ନାହାନ୍ତି ?

ସୁଣୀ - ଶୁଣିଚି ଯେ ଏ ପଦିଆ ପୀତେଇ ପୁଣି କିଏ ?

ବକ୍ରେ - ସୋମୁ ଆପଣଙ୍କୁ ତାଙ୍କ କଥା କହିନାହିଁ ? ଗୋଟେ ନିହାତି ବାଜେ ଲୋକ ଦେଖୁଚି । ଏତେ ଥର କହିଲି ଟିକେ କାନରେ ପକେଇ ଦେ କିଛି କଲା ନାହିଁ । ପଦିଆ ପୀତେଇ ତାଙ୍କ ଗାଁର । ସେମାନେ ଏମିତି ପ୍ରେମ କରୁଥିଲେ । ଦିନେ ଘରୁ ହୁଟକିରି ଲୁଚି ପଳେଇଲେ । ତାପରେ ଯାଇ ବାହା

ବି ହେଇପଡିଲେ ।

ସୁଶୀ - ବାହା-ବି ହେଇପଡିଲେ ?

ବକ୍ରେ - ଆମେ ବି ସେମିତି ଯାଇକି ବାହା ହେଇପଡିବା । କୋଉ ଗୋଟେ ମନ୍ଦିରକୁ ସିଧା ଚାଲିଯିବା । ପୂଜାରୀକି କହିବା ଆମେ ବାହା ହବୁ ଆମକୁ ବାହା କରିଦିଅ- ତମର ଦକ୍ଷିଣା ନିଅ । ବାସ୍ ! କାମ ଫତେ । ତା ପରେ ଯିଏ ଯେତେ ରାଗିମାରି ମୁଣ୍ଡେଇ ହେଲେ ହଉଥାନ୍ତୁ ।

ସୁଶୀ - (ଚିନ୍ତିତ ଓ ଶଙ୍କିତ) ଆମେ କାହାକୁ କିଛି କହିବା ନାଇଁ- ଲୁଚି ଛପି ଘରୁ ପଳେଇବା- ମନ୍ଦିରକୁ ଯାଇ ବାହା ହେଇ ପଡିବା- ଏଣେ ଆମକୁ ସମସ୍ତେ ଚାରିଆଡେ ଖୋଜୁଥିବେ- ମୋତେ ଭାରି ଡର ମାଡୁଚି । ଆମ ବାପା ଯୋଉ ରାଗୀ ଲୋକ ନା ଯେତେବେଳେ କଥାଟା ଜାଣିଯିବେ ଏମିତି ବାଘ ପରି ଗର୍ଜନ କରିବେ ଯେ...

ବକ୍ରେ - ସୁଶୀ ଦେବୀ ! ଶୁଣିଚି ।

ସୁଶୀ - କଣ ବାପାଙ୍କ ଗର୍ଜନ ନା ବାଘର ଗର୍ଜନ ?

ବକ୍ରେ - ସୁଶୀ ଦେବୀ ! ଉଭୟେ ସମାନ ।

ସୁଶୀ - ତଥାପି ଆପଣ କହୁଚନ୍ତି ଆମେ ଘରୁ ଲୁଚି ପଳେଇବା ?

ବକ୍ରେ - ତଥାପି ନୁହେଁ ସୁଶୀ ଦେବୀ ସେଇଥିପାଇଁ ।

ସୁଶୀ - ଆପଣଙ୍କୁ ଡର ମାଡୁ ନାହିଁ ?

ବକ୍ରେ - (ଯେମିତି କିଛି ଭୟଭ୍ରାନ୍ତି ନାହିଁ) ମୋତେ ? ମୋତେ- ନାଇଁତ- ନାଇଁତ ।

ସୁଶୀ - ସତରେ ?

ବକ୍ରେ - ହେଁ... ହେଁ... ହେଁ- ଆପଣଙ୍କୁ ଲାଗୁଚି ମୁଁ ଡରିଗଲା ପରି ? ଜମା ନୁହେଁ । ଏ ସବୁ କାମରେ ଡରଭୟ କଲେ ଚଳିବ ? ଖୁବ୍ ସାହସ ବାନ୍ଧିବାକୁ ପଡିବ । ଆପଣ ବି ଡରନ୍ତୁ ନାହିଁ । ମୁଁ ଅଛି ।

ସୁଶୀ - ଅଛନ୍ତି ଯେ ଆପଣ କଣ ବାପାଙ୍କୁ ପାରିବେ ? ଆପଣଙ୍କ ଓଜନ କେତେ ? ମୋ ବାପାଙ୍କ ଓଜନ କେତେ ଜାଣନ୍ତି ? ପଞ୍ଚାଅଶୀ କେଜି ।

ବକ୍ରେ - (ଶଙ୍କିତ) ପଞ୍ଚାଅଶୀ କେଜି ? ମାନେ ପଞ୍ଚାଅଶୀ କେଜି ? ମାନେ ବୟାଅଶୀ କେଜିଠୁଁ ବି ବେଶି ? କି ବିପଦ !

ସୁଶୀ - ହେଇ ତ ଆପଣ ଶୁଣୁ ଶୁଣୁ ଡରି ଗଲେଣି ।

ବକ୍ରେ - ଜମା ନୁହେଁ- ଜମା ନୁହେଁ- ମୁଁ ଜମା ଡରି ନାହିଁ । ଏକଦମ୍ ଦମ୍ଭରେ ଅଛି । ଖାଲି କେଜି ଫେଜି ଶୁଣିଦେଲି ବୋଲି ଡରିଯିବି ? ନେହିଁ । ହେଁଃ ହେଁଃ ହେଁଃ- (ହସି ଉଠିଲା) ଆପଣ ବି ଜମା ଡରନ୍ତୁ ନାହିଁ । ଆମେ ଏଥର ଆମର ଯିବା କଥାଟା ମାନେ କେବେ ଯିବା କେମିତି ଯିବା କଣ ସବୁ ସାଙ୍ଗରେ ନବା ଇତ୍ୟାଦି ଇତ୍ୟାଦି କଥାସବୁ ପକ୍କା କରିଦବା ।

ସୁଶୀ - (ଦ୍ୱିଧା ସହ) କରିଦବା ଯେ...

ବକ୍ରେ - ଆପଣଙ୍କୁ ନିଶ୍ଚେ ଡର ମାଡୁଚି । ନାଇଁ ? କହିଲି ପରା ଡରିବାର କମା କିଚ୍ଛି ନାହିଁ । ଆମେ ତ କ୍ୱାଡେ ନାଇଁ କ୍ୱାଡେ ପଳେଇବା । ପୁଲିସ୍ ଫୁଲିସ୍ କିଏ ଆମ ପରା ପାଇବ ଯେ ଆମକୁ ଧରିବ ? ଆମେ ପରା ନିଜେ ବି ନିଜର ପରା ପାଇବା ନାହିଁ । ହେଁଃ ହେଁଃ ହେଁଃ- (ହସି ଉଠିଲା । ତା ସହ ମିଶି ସୁଶୀ ବି ଅଳ୍ପ ଅଳ୍ପ ହସିଲା) କବି ଏ ବିଷୟରେ କଣ କହିଛନ୍ତି ଜାଣନ୍ତି ? (ଆବୃତ୍ତି) ଚାଲ ପ୍ରିୟେ ଯିବା କେଉଁ ଏକ ଅଜଣା ରାଜ୍ୟକୁ/ କାହା ସଂଗେ ଆମେ ଆଉ ନକରି ସାଲିସ୍/ ନଥିବ ସେଠାରେ କେହି କାଳୀ ଆଉ ମୋଟୀ/ ଅଶୀ ପଞ୍ଚାଅଶୀ/ ନଥିବେ ସେଠାରେ ବାପା ନଥିବ ପୁଲିସ୍- ହେଁଃ... ହେଁଃ... ହେଁଃ-

ସୁଶୀ - (ବକ୍ରେଶ୍ୱର ସହ ମିଶି ହସିଲା) କୋଉ କବି ଏ କଥାଟି କହିଲେ ? ତାଙ୍କରି ବି କଣ ସେଇ ଭଳି କାଳୀ ଆଉ ମୋଟୀ ପଞ୍ଚାଅଶୀ ଜେଜି ଆଉ ବାପା ପୁଲିସ ସମସ୍ୟା ଥିଲା ନା କଣ ?

ବକ୍ରେ - (ହସି ଉଠିଲା । କିଛିଟା ଅତିରଞ୍ଜିତ । ତା ସହ ମିଶି ସୁଶୀ ମଧ ହସିଲା ତାପରେ ଆବୃତ୍ତି) ରାଗିମାଗି ଯେତେ ଯିଏ ହୁଅନ୍ତୁ ମୃଣ୍ଡେଜ/ ଭାଙ୍ଗିଯିବ ଏକାଥରେ ସମସ୍ତଙ୍କ ତେଜ/ ଯେବେ ଆମେ ବାହା ହେଇ ଆସିପହଞ୍ଚିବା/ ସମସ୍ତଙ୍କ ବୁଦ୍ଧିବିଦ୍ୟା ହୋଇଯିବ Miss/ ଚାଲ ପ୍ରିୟେ ଯିବା ଏକ ଅଜଣା ରାଜ୍ୟକୁ/ କାହା ସଙ୍ଗେ ଆମେ ଆଉ ନ କରି ସାଲିସ୍- (ଉଭୟେ ହସିଉଠିଲେ)

ଇନ୍ସ - (ହଠାତ୍ ଭିତରକୁ ପଶି ଆସି ବକ୍ରେଶ୍ୱରର ଜାମାକୁ ପଛରୁ ଟାଣି ଧରିଲେ)

ବକ୍ରେ - କିଏ ? ସୋମୁ କିରେ ? ଭଲ କଲୁ ଆସିଗଲୁ । ଆମର ସବୁ ଫାଇନାଲ ହେଇ ଗଲାଣି (ହଠାତ୍ ଉଠି ବୁଲିପଡ଼ି ଇନ୍ସପେକ୍ଟରଙ୍କୁ ଦେଖିକରି ଭୟଭୀତ ହୋଇ ଟିକେ ଦୂରକୁ ଚାଲିଗଲା ସୁଶୀଳା ମଧ)

ଇନ୍ସ - ଆପଣଙ୍କ ନାଁ ବକ୍ରେଶ୍ୱର ଦାସ ?

ବକ୍ରେ - ଆଜ୍ଞା - ଆଜ୍ଞା -

ଇନ୍ସ - ଏ ଝିଅ କିଏ ? ତା ନାଁ କଣ ?

ବକ୍ରେ - ଆଜ୍ଞା ସେ ହେଲେ - ସେ ହେଲେ-

ଇନ୍ସ - (ମଝିରେ) ନାଁଟା କହି ଆସୁ ନାହିଁ ସେ ହେଲେ ସେ ହେଲେ ହଉଚଚି ? ଏ ଘର ଆପଣଙ୍କର ?

ବକ୍ରେ - ଆଜ୍ଞା ହଁ ଆମ ଘର ।

ଇନ୍ସ - ଏଠି ଆପଣ ଦିଜଣ ଏମିତି ଏକୁଟିଆ ବସି କଣ କରୁଚଚି ?

ବକ୍ରେ - ନାଇଁ ମାନେ - ମାନେ - ଆମେ- ଆମେ ବସି ଟିକେ ଗପସପ କରୁଥିଲୁଁ ।

ଇନ୍ସ - ଗପସପ କରୁଥିଲେ- ଗପସପ- ତାଙ୍କ ନାଁ ବି ତ ଆପଣଙ୍କୁ ଜଣା

ନାହିଁ । ଗପସପ କରୁଥିଲେ !

ବକ୍ରେ - ତାଙ୍କ ନାଁ ଜାଣିଚି ଆଜ୍ଞା ଜାଣିଚି- ସୁଶୀଳା ।

ଇନ୍ସ - Shut up ! ସୁଶୀଳା ! ଆଜିକାଲି ଏମିତିକା ମରହଟା ଅମଙ୍ଗଳ ନାଁ କାହାର ଅଛି ? ପଚରାପଚରି ହବାରୁ ମନରୁ ଗୋଟେ ନାଁ ତିଆରି କରି କହିଦେଲେ- ସୁଶୀଳା ! (ସୁଶୀଳାକୁ) ଆପଣଙ୍କ ନାଁ କଣ ?

ବକ୍ରେ - ଆଜ୍ଞା ତାଙ୍କ ନାଁ ପରା -

ଇନ୍ସ - (ମଝିରେ) Shut up -

ସୁଶୀ - ଆଜ୍ଞା ମୋ ନାଁ ସୁଶୀଳା ।

ବକ୍ରେ - ମୁଁ କହୁ ନ ଥିଲି -

ଇନ୍ସ - Shut up - ହଉ - ଆପଣ ନିଜ ଇଚ୍ଛାରେ ଏଠିକି ଆସିଚନ୍ତି ନା ଏ ବାବୁ ଆପଣଙ୍କୁ ଜୋର୍ କରି ଏଠିକି ନେଇ ଆସିଚନ୍ତି ?

ବକ୍ରେ - ଆଜ୍ଞା ସେ ନିଜ ଇଚ୍ଛାରେ -

ଇନ୍ସ - (ମଝିରେ ପାଟି କରି) Shut up -

ସୁଶୀ - ନାହିଁ ମୁଁ ମୋ ନିଜ ଇଚ୍ଛାରେ ଆସିଚି ।

ଇନ୍ସ - ନିଜ ଇଚ୍ଛାରେ - ନାଇଁ ? ଏଠି ଏକୁଟିଆ ବସି ଖିଖାଖିଖି ହେଇ କଣ ନା ଗପସପ କରୁଚୁ - ମୋ ନାଁ ସୁଶୀଳା - ନିଜ ଇଚ୍ଛାରେ ଆସିଚି - ତମ ଦି ଜଣଙ୍କ ମତଲବ କିଛି ଭଲ ଜଣାପଡୁନାହିଁ । ତମେ ଦି ଜଣ ଯାକ ଥାନାକୁ ଚାଲ ।

ବକ୍ରେ/ସୁଶୀ - (ଭୟ ପାଇ ଯାଇ) ଥାନାକୁ ? ଆମେ ଥାନାକୁ କାହିଁକି ଯିବୁ ଆଜ୍ଞା ?

ଇନ୍ସ - ଥାନାକୁ ଗଲେ ଜାଣିପାରିବ । ଚାଲ - ଜଲଦି ବାହାର । ବାହାରେ ଗାଡ଼ି ଅଛି ।

ବକ୍ରେ - ଥାନାକୁ ? ମାନେ - ମାନେ - ଥାନାକୁ ? ଆଜ୍ଞା ଆମେ ଥାନାକୁ -

ଇନ୍ସ - ଚାଲୁଚ ନା ଦେଖିବ ? (ଟାଣି ଟାଣି ନେଇଗଲେ ବକ୍ରେଶ୍ୱରକୁ ଓ ତା ସହ ସୁଶୀଳାକୁ)

(ହଠାତ୍ ପଶି ଆସିଚନ୍ତି କୀଚକେଶ୍ୱର ତାଙ୍କୁ ଦେଖି ସେମାନେ ଅଟକି ଗଲେ । ସୁଶୀଳା ଭୟରେ ଚାପା ଆର୍ତ୍ତସ୍ୱର କରି ଭିତରକୁ ଧାଇଁ ଚାଲିଗଲା )

କୀଚକ - (ଇନ୍ସପେକ୍ଟର ଓ ବକ୍ରେଶ୍ୱରକୁ ଗମ୍ଭୀର କିଛି ମୁହୂର୍ତ୍ତ ଚାହିଁଲେ। ତାପରେ) ଓ଼ି ବ୍ବ - ଓ଼ି ବ୍ବ - ଵଛ ଓ଼ିଙ୍ଗୁଟଵଛ!

ଇନ୍ସ - ସାର୍ !

କୀଚକ - ଯେ ତ ବକ୍ରେଶ୍ୱର ଦାସ ।

ଇନ୍ସ - ହଁ ସାର !

କୀଚକ - ବୁଝିଲି । ତାହେଲେ ଏଇ ମହାଶୟ ଯା ଭିତରେ ଥିଲେ । ନାଇଁ ? ଆପଣ ଯେତେବେଳେ ଏଠି ଆସି ପହଂଚିଲେ କଣ ଦେଖିଲେ ? ଏଇ ମହାଶୟଙ୍କୁ

ନା ଆଉ କାହାକୁ ?

ଇନ୍ସ - ମୁଁ ଆସି ଦେଖିଲି ଦାଣ କବାଟ ଭିତରୁ ବନ୍ଦ ଅଛି ।

ବକ୍ରେ - ନାଇଁ ଆଜ୍ଞା କବାଟ ତ ଖୋଲା ଥିଲା ।

କୀଚକ - ଷ୍ଟ କଥା ମଝିରେ କଥା । ଯାହାକୁ ପ୍ରଶ୍ନ ତାହାରିହିଁ ଉତ୍ତର । ଅନ୍ୟ ସମସ୍ତେ ଚୁପ୍ । Discpline - ଶୃଙ୍ଖଳା । Okay ? ହଁ - ମିଷ୍ଟର ଇନ୍ସପେକ୍ଟର ଆପଣ ପହଂଚି ଦେଖିଲେ ଦାଣ କବାଟ ଭିତରୁ ବନ୍ଦ ଅଛି । ନାଇ ?

ବକ୍ରେ - ଆଜ୍ଞା କବାଟଟା ପରା -

କୀଚକ - (ମଝିରେ) Shut up I say - ଏବଂ ଭିତରୁ ପୁଅ ଝିଅଙ୍କ ଜୋର୍ ହସ ଶୁଭୁଚି । କିନ୍ତୁ ଆପଣ ଠକ୍ ଠକ୍ କରିବା ସତ୍ତ୍ୱେ କବାଟଟା ଖୋଲିଲା ନାହିଁ ।

ବକ୍ରେ - ଆଜ୍ଞା - ଖୋଲା ତ ଥିଲା । ସେ ଆଉ ଖଟ୍ ଖଟ୍ -

କୀଚକ - (ମଝିରେ ଉଚ୍ଚ ସ୍ୱରରେ) କେତେ ଥର କୁହାଯିବ କଥା ମଝିରେ କଥା ନ କହବାକୁ ? ହଁ ମିଷ୍ଟର ଇନ୍ସପେକ୍ଟର ତାପରେ ଆପଣ କଣ କଲେ ?

ଇନ୍ସ - ତାପରେ ମୁଁ କବାଟ ଭାଙ୍ଗିବାର ଧମକ୍ ଦେଲି ।

କୀଚକ - ତାପରେ କଣ ହେଲା ?

ଇନ୍ସ- ଥରକରେ କିଛି କାମ ହେଲା ନାହିଁ । ତିନିଥର ଧମକ୍ ଦେଲା ପରେ କବାଟ ଖୋଲିଗଲା ।

ବକ୍ରେ - ଆଜ୍ଞା ମୁଁ ଯାହା କହିଚି କବାଟଟା ...

କୀଚକ - (ମଝିରେ) Shut up I say ! ହଁ- କବାଟ ଖୋଲିଲା ପରେ ଆପଣ କଣ ଦେଖିଲେ ?

ଇନ୍ସ - ଦେଖାଗଲା ଯେ ସେ ଘରେ କେବଳ ଏଇ ବାବୁ ଆଉ ଏ ଝିଅ ଅଛନ୍ତି । ଆଉ କେହି କୋଉଠି ନାହାନ୍ତି ।

ବକ୍ରେ - ନାଇଁ ଆଜ୍ଞା ପୁରନ୍ଦର ଭିତରେ ...

କୀଚକ - (ଅସହିଷ୍ଣୁ ସ୍ୱରରେ) ଓହୋଃ ! ଶହେ ଥର ମନା କରାଗଲା । ତଥାପି... ମିଷ୍ଟର ଇନ୍ସପେକ୍ଟର ଆପଣ ତାହେଲେ ସେ ଦୁହିଁଙ୍କୁ ଏତେବେଳ ଯାଏ ଥାନାକୁ ନେଇ ନାହାଁନ୍ତି କାହିଁକି ?

ଇନ୍ସ - କାରଣ ଆପଣ କହିଥିଲେ ଯେ ଏ ବାବୁ ଆପଣଙ୍କ ଝିଅକୁ ବାହା ହବାକୁ କହି ଦେଇ ଯୌତୁକ ଲୋଭରେ ଅନ୍ୟ ଅନ୍ୟ ଝିଅମାନଙ୍କ ସାଙ୍ଗରେ ମିଶୁଚନ୍ତି । ତେଣୁ ତାଙ୍କ ଉପରେ ନଜର ରଖାଯାଉ ।

କୀଚକ - Right ! ଆଚ୍ଛା ମିଷ୍ଟର ବକ୍ରେଶ୍ୱର ! ଏଥର ତୁମକୁ ପ୍ରଶ୍ନ । ଅନ୍ୟ କୌଣସି ଝିଅ ସାଙ୍ଗରେ ମିଶିବାକୁ ତୁମକୁ ମନାଥିଲା । (ବକ୍ରେଶ୍ୱର ନୀରବ) ମୁଁ ପଚାରୁଚି ଥିଲା ନା ନାହିଁ ?

ବକ୍ରେ - (ଦବିଲା ସ୍ୱରରେ) ଥିଲା ।

କୀଚକ - ତଥାପି ତୁମେ ଗୋଟେ ନିର୍ଦ୍ଦୋଷ ଝିଅକୁ କାଙ୍କୀ ଆଉ ମୋଟୀ ବୋଲି ଚାରିଆଡେ କହି କହି ବଦନାମ କରିବା- ଯୌତୁକ ଲୋଭରେ ଅନ୍ୟ ଜଣଙ୍କ ଘରେ ଅନ୍ୟ ଗୋଟେ ଝିଅ ସାଙ୍ଗରେ ଏକୁଟିଆ କବାଟ କିଳି ବସି ହସ ଖୁସି କରିବା ଆଉ ତାକୁ ଭୁଲେଇ ଭାଲେଇ ନେଇ ପଳେଇବାର ଲୋଭ ଦେଖେଇବା- ଏ ସବୁ ଭାରି ଖରାପ କଥା-

ଇନ୍ସ - ହଁ ସାର୍ ଭାରି ଖରାପ କଥା ।

କୀଚକ - ଆଚ୍ଛା ମିଷ୍ଟର ବକ୍ରେଶ୍ୱର ସେ ଝିଅଟା କିଏ ? ତାର ଠିକଣା ଦିଅ । ତାଙ୍କ ଘରକୁ ଖବର ଦିଆଯିବ ।

ବକ୍ରେ - ଆଜ୍ଞା ସେ ଝିଅ- ସେ ଝିଅର ଠିକଣା ତ...

କୀଚକ - My goodness ! ସେ ଝିଅ କିଏ ତା ବି ତମେ ଜାଣି ନା- ତା ଠିକଣା ବି ଜାଣିନା ଅଥଚ ତୁମେ ତାକୁ ଭୁଲେଇ ଭାଲେଇ ନେଇ ପଳେଇବା ମତଲବ୍‌ରେ ଥିଲ ? - ମିଷ୍ଟର ଇନ୍ସପେକ୍ଟର ! କେତେ ବର୍ଷ ?

ଇନ୍ସ - ବାର ବର୍ଷ ।

କୀଚକ - ବାରବର୍ଷ ନୁହେଁ ଏଭଳି କେସ୍‌ରେ ବାଇଶବର୍ଷ ସଜା ହବା ଉଚିତ୍ । ଇନ୍ସପେକ୍ଟର ! ତୁମେ ଏଥର ତାଙ୍କୁ ଥାନାକୁ ନେଇ ଯାଅ ।

ଇନ୍ସ - ଆଜ୍ଞା ହଉ । ଆସନ୍ତୁ ବକ୍ରବାବୁ- ଆସନ୍ତୁ - (ବକ୍ରେଶ୍ୱରକୁ ଟାଣି ଟାଣି ନେଲେ)

ସୋମୁ - (ହଠାତ୍ ଆସିଛି) ଆଜ୍ଞା ନମସ୍କାର ।

କୀଚକ - ତୁମେ କିଏ ? Who are you ? ତୁମେ କାହିଁକି ଯା ଭିତରକୁ ବିନା ଅନୁମତିରେ ଆସିଲ ?

ସୋମୁ - ଆଜ୍ଞା ମୁଁ ଏ ବକ୍ରେଶ୍ୱର ବାବୁଙ୍କ ବନ୍ଧୁ । ମୋ ନାଁ ଅନିନ୍ଦ୍ୟ ସାମନ୍ତରାୟ ।

ବକ୍ରେ - (ଆଶ୍ଚର୍ଯ୍ୟ) ସୋମୁ ! ତୋ ନାଁ... ?

କୀଚକ - Shut up ! No କଥା ମଝିରେ କଥା । ସେ କଣ ତାଙ୍କ ନାଁ ଜାଣନ୍ତି ନାହିଁ ? ହଁ ମିଷ୍ଟର ଅନିନ୍ଦ୍ୟ ! ତମେ କାହିଁକି ଆସିଚ ?

ସୋମୁ - ଆଜ୍ଞା ଦୋଷ ପ୍ରକୃତରେ ମୋର । ମୁଁଇ ସେ ଝିଅକୁ ବକ୍ରେଶ୍ୱର ବାବୁଙ୍କ ପାଖକୁ ପଠେଇଥିଲି ।

କୀଚକ - (ପାଟି କରି) କଣ ହେଲା ? ତମେ-ତମେ ସେ ଝିଅକୁ ତାଙ୍କ ପାଖକୁ ପଠାଇଥିଲ ? ତାହେଲେ ତମେ ଏ ସବୁ ଗଣ୍ଡଗୋଳର ମୂଳ ? ମିଷ୍ଟର ଇନ୍ସପେକ୍ଟର ! ଏ ମିଷ୍ଟର ଅନିନ୍ଦ୍ୟ ଅସଲ ଆସାମୀ । ତମେ ତାଙ୍କୁ ଧରି ନା କେମିତି ? ଏବେ ଧର । Quick...

ସୋମୁ - ମୋର କିଛି ଆପତ୍ତି ନାହିଁ । ତେବେ ଆପଣ ବକ୍ରେଶ୍ୱର ବାବୁଙ୍କୁ ଛାଡି ଦିଅନ୍ତୁ । ସେ ଏ ସବୁ କିଛି ଜାଣନ୍ତି ନାହିଁ ।

କୀଚକ - ଅଲବତ୍ ଜାଣନ୍ତି । ସେ ଜଣେ ଭୟାନକ ଯୁବକ । ଆଉ ତୁମେ ତାଙ୍କର

ତେଲା ।

ସୋମୁ - ନାହିଁ ଆଜ୍ଞା ଆପଣ ମୋତେ ବିଶ୍ୱାସ କରନ୍ତୁ ।

କୀଚକ - ହଉ ଠିକ୍ ଅଛି । ଛାଡି ଦିଆଯିବ । କିନ୍ତୁ ଗୋଟେ ସର୍ତ୍ତରେ । ସେ ସର୍ତ୍ତଟା ହେଲା ଯେ ସେ ମହାଶୟ ମୋ ଝିଅକୁ ବାହା ହେବେ ଯାହାକୁ ସେ ଦେଖିବାକୁ ନ ଆସି ତାକୁ ଅପମାନ ଦେଇଥିଲେ । କଣ ରାଜୀ ?

ସୋମୁ - (ବକ୍ରେଶ୍ୱରକୁ) ବକ୍ରେଶ୍ୱରବାବୁ ! କହନ୍ତୁ ।

ବକ୍ରେ - ମାନେ ମାନେ ସେଇ... ?

କୀଚକ - ହଁ ସେଇ କାଳୀ ଆଉ ମୋଟୀ ଝିଅକୁ ।

ବକ୍ରେ - ଦେଖନ୍ତୁ...

କୀଚକ - No ଦେଖନ୍ତୁ ପେଖନ୍ତୁ ବିଜିନେସ । ହଁ କି ନା । ନ ହେଲେ ଏଇଠୁ ସିଧା ସିଧା ଥାନା । (ବକ୍ରେଶ୍ୱର ନୀରବ) ଜଲଦି କୁହ- ବାହା ହବ ନା ବନ୍ଧା ହେଇ ଥାନାକୁ ଯିବ ।

ସୋମୁ - ନାଇଁ ଆଜ୍ଞା ସେ ବାହା ହବ ।

କୀଚକ - Shut up- ତମକୁ ପଚରାଗଲା ? ସେ ନିଜେ କହନ୍ତୁ ।

ସୋମୁ - ବକ୍ରେଶ୍ୱର ବାବୁ !

ବକ୍ରେ - ମାନେ ମାନେ ସେଇ ବୟାଅଣୀ କେଜି ?

କୀଚକ - ହଁ ହଁ ସେଇ ବୟାଅଣୀ କେଜି କାଳୀ ଆଉ ମୋଟୀ । ଜଲଦି କୁହ ବାହାଘର ନା ଥାନା ? ଜଲ୍‌ଦି Quick - (ବକ୍ରେଶ୍ୱର ନୀରବ) ଆଚ୍ଛା ହଉ ଠିକ୍ ଅଛି । କଥାଟା ଏଇଠି ସାଙ୍ଗେ ସାଙ୍ଗେ ଫଇସଲା ହେଇଯାଉ । ମିଷ୍ଟର ଅନିନ୍ଦ୍ୟ ! ତମେ ମୋ ଝିଅକୁ ଏଠିକି ନେଇଆସ ।

ସୋମୁ - ହଉ । (ଭିତରକୁ ଗଲା ! ବକ୍ରେଶ୍ୱର ଭାରି ଶଙ୍କିତ ଦୃଷ୍ଟିରେ ଚାହିଁ ରହିଲା । କିଛି ମୂହୂର୍ତ୍ତ ପରେ ସାଙ୍ଗରେ ଜୀତା ଓରଫ ସୁଶୀଳାକୁ ନେଇ ଆସିଲା । ବକ୍ରେଶ୍ୱର ଭାରି ଆଶ୍ଚର୍ଯ୍ୟ)

କୀଚକ - (ପାଟି କରି) ଏ ଝିଅ କିଏ ? Who is this girl ? ଯାକୁ କାହିଁକି ଆଣିଚ ? ସେ କାଳୀ ମୋଟୀ ଝିଅ କାହିଁ ?

ସୋମୁ - ଆପଣଙ୍କର ଏଇତ ଗୋଟିଏ ବୋଲି ଝିଅ । ଆଉ ତ କୌଣସି ଝିଅ ନାହାଚି । ମୁଁ ତ ଏଇ ଝିଅକୁ ହିଁ ବକ୍ରବାବୁଙ୍କ ପାଖକୁ ପଠେଇଥିଲି । ନୁହେଁ କି ବକ୍ରବାବୁ ?

କୀଚକ - କୀଚକ ହର୍ଷବାଲା ତା ଝିଅକୁ ଚିହ୍ନିନାହିଁ - ତମେ ତାକୁ ତା ଝିଅକୁ ଚିହ୍ନଉଚ ?

ସୋମୁ - କିନ୍ତୁ ମୁଁ ଯାହା ଜାଣେ ଆପଣଙ୍କ ନାଁ ତ କୀଚକ ହର୍ଷବାଲା ନୁହେଁ ଆପଣଙ୍କ ନାଁ ହଉଚି ସ୍ୱରୂପ ମହାପାତ୍ର ।

କୀଚକ - What rubbish ! ମୋ ନାଁ କୀଚକ ହର୍ଷବାଲା ନୁହେଁ ସ୍ୱରୂପ ମହାପାତ୍ର ?

ମିଷ୍ଟର ଇନ୍ସପେକ୍ଟର ଏ ବାବୁଙ୍କର ଏଟା ଆଉ ଗୋଟେ ଚାଲ ! ଯାଙ୍କୁ ତମେ ଏତେ ବେଳଯାକେ ଥାନାକୁ ନେଉନା କାହିଁକି ?

ଇନ୍ସ - କିନ୍ତୁ ଆଜ୍ଞା ମୁଁ ତ ପୋଲିସ ଇନ୍ସପେକ୍ଟର ନୁହେଁ । ରିଟାୟାର୍ଡ ସିକ୍ୟୁରିଟି ଆଡଭାଇଜର ଚନ୍ଦ୍ରମୋହନ ଚମ୍ପତି । ତୁମର ବନ୍ଧୁ ।

କୀଚକ - Don't tell me stories ! ତମେ ପୋଲିସ ଇନ୍ସପେକ୍ଟର ନୁହଁ - ଚନ୍ଦ୍ର ମୋହନ ଚମ୍ପତି- ମୋର ବନ୍ଧୁ ? ମୁଁ ମୋ ବନ୍ଧୁକୁ ଚିହ୍ନି ନାହିଁ ? କି ବାଜେ କଥା ସବୁ ! ଏଇ - ଏଇ ମିଷ୍ଟର ଅନିନ୍ଦ୍ୟ ସବୁ ଗଣ୍ଡଗୋଳର ମୂଳ । ତାଙ୍କୁ ଧର ।

ସୋମୁ - ଠିକ୍ କହିଲ ମାମୁଁ ମୁଁଇ ସବୁ ଗଣ୍ଡଗୋଳର ମୂଳ ।

କୀଚକ - ମାମୁଁ ? (ହଠାତ୍ ହସି ଉଠିଲେ) ହାଃ...ହାଃ...ହାଃ... ବକ୍ସ ! ଏ ସବୁ ଦେଖି ତମେ ଭାରି ଆଶ୍ଚର୍ଯ୍ୟ ହେଇ ଯାଉଥିବ । ନାଇଁ ? ପ୍ରକୃତରେ ମୋର କୌଣସି କାଛୀ ମୋଟା ଝିଅ ନାହିଁ । ତମେ ସେ ଦିନ ଢାଙ୍କାକୁ ଦେଖିବାକୁ ଆସିଲ ନାହିଁ ବୋଲି ମୁଁଇ ରାଗରେ ସେ କଥାଟି ଆରମ୍ଭ କରିଥିଲି । କିନ୍ତୁ ତମ ହାତରେ ହିଁ ଢାଙ୍କାକୁ ଦେବି ବୋଲି ମୁଁ ପ୍ରଥମରୁହିଁ ସ୍ଥିର କରିଥିଲି । ଯାହା ସବୁ ଘଟିଗଲା ସେ ସବୁ ସୋମୁର କାମ । ସେ ଠିକ୍ କହିଚି ଯେ ଏ ସବୁର ସେହିଁ ମୂଳ । ତେବେ ତୁମର ଦୁର୍ବଳ ସ୍ୱାସ୍ଥ୍ୟ ପାଇଁ ଆଉ ତମର lack of confidence ପାଇଁ ମୁଁ ଚିନ୍ତିତ ଥିଲି । ସେଇଥିପାଇଁ ଯାହା ସବୁ ତମକୁ କହିଚି ସେ ସବୁ ତୁମକୁ ସୁସ୍ଥ ସବଳ କରିବା ପାଇଁ । ସେଇଥିପାଇଁ ତୁମକୁ ବେଳେ ବେଳେ କିଛି କଡା କଥା କହିଦେଇଚି- ନିଜ ନାଁକୁ ଲୁଚେଇ ଦେଇଚି । ସବୁ ସେଇ ଲକ୍ଷ୍ୟରେ । ବକ୍ସ ! ତୁମେ ସେ ସବୁକୁ ଜମା ମନରେ ଧରିବ ନାହିଁ ।

ସୋମୁ - ମାମୁଁ ! ଆପଣ ତ ସବୁ ହାଣ୍ଡି ଏକାଥରେ ଭାଙ୍ଗିଦେଲେ ।

କୀଚକ - ମୋର ତ ସେଇ ଗୋଟିଏ ହାଣ୍ଡି ଥିଲା । ତୋର କଣ ଗୋଟେ ଅଲଗା ହାଣ୍ଡି ଥିଲା ନା କଣ ? (ସମସ୍ତେ ହସି ଉଠିଲେ)

ଇନ୍ସ - ସ୍ୱରୂପ ! ଗୋଟେ କଥା କିନ୍ତୁ ମନେ ରଖିଥିବ । ଝିଅର ବାହାଘର ନିମନ୍ତ୍ରଣ ପତ୍ରଟା ମୋ ଘର ଠିକଣାରେ ପଠେଇବ-ଥାନା ଠିକଣାରେ ନୁହେଁ । (ସମସ୍ତେ ହସି ଉଠିଲେ) ।

ଲିଲି - (ଆସିଛି । ହାତରେ ଗୋଟେ ବ୍ୟାଗ) ବକ୍ସ !

ବକ୍ରେ - (ଦେଖି ଦେଇ ଭାରି ଖୁସି ହୋଇ) ଏଁ ଅପା କିଲୋ ? ଆ ଆ ଆ - (ଲିଲି ପାଖକୁ ଆସିଲା । ବକ୍ରେଶ୍ୱର ତା କାନରେ କିଛି କହିଲା)

ଲିଲି - (ଭାରି ଖୁସି) ସତରେ ? (ଆଖିର ଇଙ୍ଗିତରେ) ଏଇ ଝିଅ ? (ବ୍ୟାଗରୁ ଗୋଟେ ଓଜନ ଯନ୍ତ୍ର କାଢି ରଖିଛି)

ବକ୍ରେ - ଅପା ! ସେଟା କଣ ? ମିଠା ପ୍ୟାକେଟ କିଲୋ ? ଦେଖି ପକେଇ ଆଶ୍ଚର୍ଯ୍ୟ

ହୋଇ) ଏଁ ! ଓଜନ ଯନ୍ତ୍ର !

ଲିଲି - ଆ ଲୋ ମା ଆ - ଯା ଉପରେ ଛିଡ଼ା ହୋ । ଓଜନଟା ଦେଖି ନବା ।

କୀଚକ - ଯେ କଣ ? ଏ ଓଜନ ଯନ୍ତ୍ର କଣ ? ସେ କାହିଁକି ଓଜନ ହବ ?

ଲିଲି - ଓଜନ କାହିଁକି ହବ ? ଆପଣ କଥାଟା କଣ କିଛି ଜାଣନ୍ତି ନାହିଁ ? ହଉ ମୁଁ ବୁଝେଇ ଦଉଚି । ଆମ ବକୁର ଭାରି ଇଚ୍ଛା ଥିଲା ସେ ଯାହାକୁ ବାହାହବ ଆଗେ ତାର ଓଜନ ନବ - ତାପରେ ବାହାଘର କଥା । ଆ ଲୋ ମା ଆ -

କୀଚକ - ବକ୍ରେଶ୍ୱର ! କଥାଟା କଣ ସତ ?

ବକ୍ରେ - ହେଁ ହେଁ - ନାଇଁ ଯେ ନାଇଁ ଯେ - ତାଙ୍କର ଓଜନ ନୁହେଁ - ମୋର ଓଜନ -

କୀଚକ - ତମର ଓଜନ ! ତାହେଲେ ଛିଡ଼ା ହୁଅ ।

ବକ୍ରେ - (ଓଜନ ଯନ୍ତ୍ର ଉପରେ ଛିଡ଼ା ହେଲା)

ସୋମ୍ଯ/କୀଚକ-କେତେ - କେତେ - ?

ବକ୍ରେ - (ନିରାଶାର ସ୍ୱରରେ) ଯୋଉ ଏକାଅଶୀ କି - ନାଇଁ ନାଇଁ ଯୋଉ ଏକଚାଳିଶି କି ସେଇ ଏକଚାଳିଶି ।

କୀଚକ - (ହସି ଉଠିଲେ) I see - ତା ହେଲେ ତମେ ଏତେ ଦିନ ହେଲା ଯୋଉ ଅପ୍ରେସନ ଏକାଅଶୀ କେଜି କରୁଥିଲ ସେଟା -

ବକ୍ରେ - ଆଜ୍ଞା ସେଟା ଆଜିଠୁଁ ଏକଦମ୍ କ୍ୟାନସଲ୍ - (ସମସ୍ତେ ହସିଉଠିଲେ)

ପୁର - (ହାତରେ ଗୋଟେ ମିଠା ପ୍ୟାକେଟ ଧରି ପଶି ଆସିଛି) ସାର୍ ! ମିଠା ।

କୀଚକ - ସେ ମିଠାକୁ ବି କେଜି ।

ପୁର - ସେ ମିଠାକୁ ବି କେଜି ? ଆପଣ ଖାଇବେ !

କୀଚକ - Shut up ! ଆମେ ସମସ୍ତେ ଖାଇବା ।

(ସମସ୍ତେ ଉଚ୍ଚ ଓ ଉଦ୍‌ଫୁଲ୍ଲିତ ସ୍ୱରରେ ହସି ଉଠିଲେ)

--- ୦ ---